# ନିବେଦନ

ମାତୃଶ ଦରପାଠୁଆ ଜ୍ଞାନ-ବିହୀନ ବ୍ୟକ୍ତି ପକ୍ଷେ ପୁଣ୍ୟାତ୍ମା-[redacted]ନଙ୍କର ଜୀବନ ଚରିତ ଲିପିବଦ୍ଧ କରିବା କେବଳ ଧୃଷ୍ଟତାର ପରିଚାୟକ ମାତ୍ର, ତେବେ ଶୈଳଗଙ୍ଗ ଦେବଙ୍କ ଅନୁମତି କ୍ରମେ କମ୍ପୁକିଣ୍ଡି ସାମନ୍ତରାୟ ପ୍ରଧାନ ସଚୀବ ପଦେ ବସୁକଳ୍ପ ମହାରାଜାଙ୍କ ସହିତ ଅସି ବ୍ରାହ୍ମଣୀ ଓ ବରୁପା ନଦୀର ସଙ୍ଗମ ସ୍ଥାନ ଉଦୟପୁରିର ଦୁର୍ଗ ନିକଟରେ ବସୁବାସ କରିଥିଲେ, ତାହାଙ୍କର ପଦ ଅନୁସାରେ ତତ୍ରତ୍ୟ ସ୍ଥାନର ନାମ ରଘୁପୁର ହୋଇଅଛି । ସେହି ବଂଶର ଶିବ[redacted]ଶର ଆଦର୍ଶ ଜନନୀରୂପେ, ମଦୀୟ ପୂଜନୀୟା ମାତୃଦେବୀ ମହେ[redacted]ୟୀଙ୍କର ଶ୍ରୀମାନ୍ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ସଂପ୍ରଚାରିତ ଧର୍ମ ପ୍ରତି ପ୍ରଗାଢ଼ ବିଶ୍ୱାସ ହେତୁ ତଦୀୟ ଅନୁମତି କ୍ରମେ ଇଦଂ ପବିତ୍ର-ଜୀବନ-ଗାଥା ଲିପିବଦ୍ଧ କରିବାକୁ ପ୍ରୟାସି ହେଲି ।

ଜୀବନୀଟିର ପ୍ରଥମ ଭାଗ ଲେଖିସାରି ମଦୀୟ ସହକର୍ମୀ ଶ୍ରୀଯୁକ୍ତ ବାବୁ ଶ୍ରୀ ମଙ୍ଗଳବିହାରୀ ଜେନା ମହୋଦୟଙ୍କୁ ଦେଖାଇବାରୁ ସେ ବହୁ ଆୟାସ ସତ୍ତ୍ୱେ ଜୀବନୀଟିକୁ ସଂଶୋଧନ କଲେ, ସେଥି ଲାଗି ମୁଁ ତାହାଙ୍କ ନିକଟରେ ଋଣୀ, ଓ ଶ୍ରୀଯୁକ୍ତ ବାବୁ ନନ୍ଦ [redacted]ୀର, ପରିଶେଷରେ ବକ୍ତବ୍ୟ ଏହି ଯେ, ଏହା ମୋର ପ୍ରଥମ [redacted]ମ, ଏଥିରେ ଭ୍ରମ ପ୍ରମାଦ [redacted]ହିଥିବା ସ୍ୱାଭାବିକ, କୃତାଞ୍ଜଳି ପୁଟରେ ପାଠକ-ପାଠିକାମାନଙ୍କ ନିକଟରେ ନିବେଦନ, ସେମାନେ ଦୟାକରି ତ୍ରୁଟି ମାର୍ଜ୍ଜନା କରିବେ ।

ମୁ, ରଘୁପୁର
ପୋ: ଅ: ବେଣୀପୁର
ଜି: କଟକ

ବିନୀତ
ଶ୍ରୀକାନ୍ତ ମହାନ୍ତି

# ସ ମ ର୍ପ ଣ



ଯେ ସ୍ୱକୀୟ ଉଦାରତା ଦ୍ୱାରା ସାଧାରଣ ମନ ହରଣ କରୁଛନ୍ତି, ଯାହାଙ୍କର ସାହିତ୍ୟ ପ୍ରୀତି ଓ ଜାତୀୟ ଅନୁରାଗ, ତଥା ସ୍ୱଧର୍ମ ବିଶ୍ୱାସ ସର୍ବଥାନୁକରଣୀୟ, ଯେ ବହୁ ଦିବସରୁ ଶିକ୍ଷା ବିଭାଗର ଭାର ଗ୍ରହଣ କରି ଅଗଣିତ ବାଳକବାଳିକାଙ୍କ ଅଜ୍ଞାନ ହୃଦ[redacted] ଜ୍ଞାନାଲୋକ ପ୍ରଦାନ କରୁଛନ୍ତି, ସେହି ମହାଶୟ ପୁରୀ-ଜିଲ୍ଲା ଅନ୍ତର୍ଗତ ନିମାପଡ଼ାସ୍ଥ ରେବନପୁର ବିଶୁଦ୍ଧ ବ୍ରାହ୍ମଣ ବଂଶର ଉପଯୁକ୍ତ ମାନବ ଶ୍ରୀଯୁକ୍ତ ବାବୁ ଶ୍ରୀଯଦୁନାଥ ଦାସ ସ୍କୁଲ୍ ସବ୍‌ଇନ୍‌ସ୍‌ପେକ୍ଟର ମହୋଦୟଙ୍କ କରକମଳରେ ଭକ୍ତିର ନିଦର୍ଶନ ସ୍ୱରୂପ ପୁଣ୍ୟାତ୍ମା ଅଚ୍ୟୁତାନନ୍ଦ ମହାପୁରୁଷଙ୍କ ପବିତ୍ର-ଜୀବନ-ଗାଥା ସମର୍ପଣ କରୁଅଛି ।

ପ୍ରଣେତା—ଶ୍ରୀକାନ୍ତ ମହାନ୍ତି



### ମହାପୁରୁଷ ଅଚ୍ୟୁତାନନ୍ଦଙ୍କ

# ଜୀବନ ଚରିତ ବା

# ଆଶ୍ଚର୍ଯ୍ୟ ମହିମା

## ପ୍ରଥମ ଭାଗ

## ପ୍ରଥମ ପରିଚ୍ଛେଦ ।

### ( ସୂଚନା )

**ଆ**ଜି ଜ୍ୟେଷ୍ଠ ପୂର୍ଣ୍ଣିମା । ବଡ଼ ମହୋତ୍ସବ ମେଳା । ସେଥିଲାଗି ଅଗଣିତ ନର-ନାରୀ ମହାର୍ଘ ପରିଚ୍ଛଦ ପରିଧାନ କରି, ମହୋ-ଲ୍ଲାସ ଚିତ୍ତେ ମେଳାଭିମୁଖେ ପ୍ରଧାବିତ ହେଉ ଅଛନ୍ତି । ସେମାନଙ୍କ ଗତିରୁ ଜଣାଯାଏ, ସତେ ଯେପରିକି ସେମାନେ କୌଣସି ସ୍ୱର୍ଗୀୟ ଅମୂଲ୍ୟ ସମ୍ପଦ ପାଇବାକୁ ଉଦ୍‌ବେଗ । ଅହା, ମନୁଷ୍ୟର ଧର୍ମଭାବ କେତେ, ଏକା ଏଠାରେ କାହିଁକି ଭାରତର ପ୍ରତ୍ୟେକ ଭାରତୀୟ ଶିରା ପ୍ରଶିରାରେ ଯେ ଆଧ୍ୟାତ୍ମିକ ଭାବ ଅକ୍ଷୁଣ୍ଣ [redacted]ଛି । ଯେଉଁ ଧର୍ମ ଭାବ ଆର୍ଯ୍ୟ ମନୀଷିଗଣଙ୍କ ବିଶେଷ ଗବେ-[redacted] ସତ୍ତ୍ୱ ପ୍ରାଚ୍ୟ ଜଗତରେ ପ୍ରଥମ ସ୍ଥାନ ଅଧିକାର କରିଛି, ଯେଉଁମାନେ ଶରୀର ବିଜ୍ଞାନ ବଳରେ ଅସାଧ୍ୟ ସାଧନ କରୁଥିଲେ; ସେହି ପ୍ରାଚୀନ ସନାତନ ଧର୍ମର ଜଣେ ପ୍ରଧାନ ସଂସ୍କାରକ ଶ୍ରୀମାନ୍ ମହାପୁରୁଷ ଅଚ୍ୟୁତ ସତ୍ୟ ସାଧନ ଓ ବାକ୍ ସିଦ୍ଧି ହେତୁ ଆଜି ଜନ ସମାଜରେ ଜୀବନ୍ତ ଦେବତା ରୂପେ ପୂଜ୍ୟ ।

ତାହାଙ୍କର କୀର୍ତ୍ତି ଯୁଗଯୁଗରୁ ନେମ୍ବାଲ ବଟେ ଓ ଶାନ୍ତି ମହୋହାସ୍ତ୍ରବ ହେଲା, ସେହି ମହାପୁରୁଷ ଭଗବାନଙ୍କ ଅଂଶାବତାର ମାନ୍ୟ । ଭଗବାନ୍ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି:—

"ଯଦା ଯଦାହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ,
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ
ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାଂ
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।

ହେ ଅର୍ଜୁନ ଯେତେବେଳେ ଧର୍ମର ଗ୍ଳାନି ଉପସ୍ଥିତ ହୁଏ, ସେତେବେଳେ ମୁଁ ସ୍ୱୟଂ ଧର୍ମରକ୍ଷା ନିମିତ୍ତ ପୃଥିବୀରେ ଜନ୍ମ ଗ୍ରହଣ କରିଥାଏ ।

ଧର୍ମ, ଆତ୍ମା, ଏହା କି ଅମୂଲ୍ୟ ଶବ୍ଦ, ଏହି ଶବ୍ଦ [redacted] ଧର୍ମ କଲେ ମାନେ ଦାନବର ବି ର ହୃଦୟ ମଧ୍ୟ ପରିବର୍ତ୍ତିତ ନ[redacted]ରି ମୁହୂର୍ତ୍ତେ ମାତ୍ର ରହି ପାରିବ ନାହିଁ । ଏହି ଶବ୍ଦଟି କାହାରି କପୋଳ କଳ୍ପିତ ନୁହେଁ, ଏହା ମାନବ ସମାଜକୁ ଶୃଙ୍ଖଳିତ କରିବ ସତ୍ୟ ଓ ନ୍ୟାୟ-ପଥରେ ପଥିକ କରିବାକୁ ସୃଷ୍ଟି ପ୍ରାରମ୍ଭରୁ ପରମାତ୍ମା ପରମେଶ୍ୱରଙ୍କଠାରୁ ନିସୃତ ହୋଇଅଛି । ଯେତେବେଳେ ମାନବ ଏହି ଧର୍ମ ପଥ ଭ୍ରଷ୍ଟ ହୋଇ କୁପଥଗାମୀ ହୁଏ, ସେତେବେଳେ ସ୍ୱୟଂ ଭଗବାନ ମହାପୁରୁଷ ରୂପେ ଅବତୀର୍ଣ୍ଣ ହୋଇ ପଥହରା ମାନବକୁ ମୁକ୍ତି ଓ ସତ୍ୟପଥ ପ୍ରଦର୍ଶନ କରନ୍ତି, ନୂତନ ପ୍ରେରଣା ଦ୍ୱାରା ଜଗତରେ ନବ ଜାଗରଣ ସୃଷ୍ଟି ହୁଏ । ଦେଶମଧ୍ୟରୁ ହିଂସ[redacted] ଦ୍ୱେଷ ପ୍ରଭୃତି ବାତୁଳତା ନୋହି ଚତୁର୍ଦ୍ଦିଗରେ ଭ୍ରାତୃଭାବ ଜାଗରିତ ହୁଏ ।

ଶ୍ରୀମାନ୍ ମହାପ୍ରଭୁ ଶ୍ରୀଚୈତନ୍ୟ, ଶଙ୍କରାଚାର୍ଯ୍ୟ, ରାମାନୁଜ, ତୁଳସୀ ଦାସ, ନାନକ, ଅଚ୍ୟୁତାନନ୍ଦ ଓ ରାମକୃଷ୍ଣ ପରମହଂସ ପ୍ରଭୃତି ମନୀଷିଗଣ ଏହି ପୁଣ୍ୟଭୂମି ଭାରତ ବର୍ଷରେ ଅବତୀର୍ଣ୍ଣ

ହୋଇ ଧର୍ମରକ୍ଷା ଓ ଧର୍ମ ପ୍ରଚାର କରିଥିଲେ । ଏମାନେ ପ୍ରତ୍ୟେକ ଜଣେ ଜଣେ ଧର୍ମ ସଂସ୍କାରକ । ଧର୍ମରେ ଯେଉଁ କୁସଂସ୍କାର ପ୍ରବେଶ କରିଥାଏ, ସଂସ୍କାରକଗଣ ତାହା ବିଦୂରିତ କରି ଅପୂର୍ବ ନିର୍ମଳ ପ୍ରେମ ସ୍ରୋତ ପ୍ରବାହିତ କରାଇ ଦିଅନ୍ତି । ଏହି ସତ୍ୟ-ସ୍ରୋତରେ ଜଗତ ପ୍ଳାବିତ ହୁଏ ।

ଧର୍ମପଥ ଅତୀବ ଦୁର୍ଗମ, ମାନବ ଏହି ଦୁର୍ଗମ ପଥ ମଧ୍ୟେ ପ୍ରବେଶ କଲେ "କିଂ-କର୍ତ୍ତବ୍ୟ ବିମୂଢ଼ ହୋଇ ପଥ ଅତିକ୍ରମ କରି-ବାକୁ ଅସମର୍ଥ ହୋଇ ପଡ଼େ । ମହାପୁରୁଷ ଘୋର ଦୁର୍ଗମ ପଥକୁ ସୁଗମ ପଥ ରୂପେ ପରିଣତ କରିଦିଅନ୍ତି, ମାନବ ସେମାନଙ୍କ ପଦା[illegible] ଅନୁସରଣ କଲେ, ତତ୍ତ୍ୱଜ୍ଞାନ ପ୍ରାପ୍ତ ହୋଇ ମୁକ୍ତି ଲାଭ କରି[illegible]କୁ ସକ୍ଷମ ହୁଏ ।"

ପ୍ରତ୍ୟେକ ମହାପୁରୁଷଙ୍କ ଜୀବନ ଚରିତ ପବିତ୍ର ଓ ମହନୀୟ, ଶ୍ରୀମାନ ମହାପୁରୁଷ ଅଚ୍ୟୁତାନନ୍ଦ ଜଣେ ଅସାଧାରଣ ମନୀଷି-ଥିଲେ । ତାହାଙ୍କର ଜୀବନ ଚରିତ ଶ୍ରବଣ କଲେ ମାନବର ମନ ଧର୍ମ ଭାବରେ ଅନୁପ୍ରାଣିତ ହୋଇ ହୃଦୟରେ ଅଶେଷ ଶାନ୍ତି ରସର ଉଦ୍ରେକ ହୁଏ । ସେହି ମହାପୁରୁଷ, ତାହାଙ୍କର ଜନ୍ମ [illegible]ର ଠାରୁ ମହା ପ୍ରୟାଣ ପର୍ଯ୍ୟନ୍ତ ଯୋଗ ଓ ସତ୍ୟର ଯେଉଁ ଅସୀମ ମହାତ୍ମ୍ୟ ଦେଖାଇ ଭବିଷ୍ୟତ ଜନସମାଜର ବିଶେଷ ଉପ-କାରାର୍ଥେ ବହୁବିଧ ଗ୍ରନ୍ଥ ପ୍ରଣୟନ କରି ଯାଇ ଅଛନ୍ତି, ସେହି ମହନୀୟ ମହାମାନବଙ୍କ ପଦାଙ୍କ ଅନୁସରଣ ପୂର୍ବକ ଶୁଦ୍ଧ ଜ୍ଞାନ ପ୍ରାପ୍ତ ହେବାକୁ ତଦୀୟ ପ୍ରଣୀତ ଗ୍ରନ୍ଥରାଜୀ ଶ୍ରବଣ କରିବା ପ୍ରତ୍ୟେକ ମାନବର ପ୍ରଧାନ କର୍ତ୍ତବ୍ୟ ।

ସେଥିପାଇଁ ଧର୍ମପ୍ରାଣ ଯୁଧିଷ୍ଠିର କହିଛନ୍ତି:—

"ବେଦାବିଭିନ୍ନାଃ ସ୍ମୃତୟୋ ବିଭିନ୍ନା
ନାସୌମୁନିର୍ଯସ୍ୟ ମତଂ ନ ଭିନ୍ନଂ
ଧର୍ମସ୍ୟତତ୍ତ୍ୱଂ ନିହିତଂ ଗୁହାୟାଂ
ମହାଜନୋ ଯେନ ଗତଃ ସ ପନ୍ଥା"

ମହାପୁରୁଷମାନେ ମୋହାନ୍ଧ ମାନବର ପଥ ପ୍ରଦର୍ଶକ ଅଟନ୍ତି । ସେହି ତ୍ରିକାଳଦର୍ଶୀ ସିଦ୍ଧଗଣ ବହୁକାଳ କଠୋର ତପସ୍ୟା ଦ୍ୱାରା ଯାହା ସତ୍ୟ ବୋଲି ନିର୍ଣ୍ଣୟ କରି ଜୀବୋନ୍ମୁକ୍ତି ନିମିତ୍ତ ମାନବକୁ ଯେଉଁ ପଥେ ଅଧିରୂଢ଼ କରାଇଛନ୍ତି ସେହି ପଥ ଅନୁସରଣ କଲେ, ତାହାର ମୁକ୍ତି ଅବଶ୍ୟମ୍ଭାବୀ ।

ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଅଛନ୍ତି :—

ଯଂ ଯଂ ଭାବସ୍ମରନ୍‌ବ୍ୟାପି ତ୍ୟଜତ୍ୟନ୍ତେ କଳେବରମ୍,
ତଂ ତଂ ମେ ବେତ୍ତି କୌନ୍ତେୟ ସଦା ତଦ୍ ଭାବଭାବିତ ।

ମାନବ ତାହାର ଅନ୍ତର ଆତ୍ମାରେ ଯେଉଁ ଭାବ ପୋଷଣ କରି ମାନବଲୀଳା ସମ୍ବରଣ କରେ, ସେ ତଦ୍‌ବତ୍ ଫଳ ଭୋଗରେ ଭାଗୀହୁଏ, ଅର୍ଥାତ୍ ଜୀବନର ପ୍ରାରମ୍ଭରୁ ମାନବ ଯଦି ସତ୍‌ଚିନ୍ତା କରି ସତ୍କାର୍ଯ୍ୟାନୁଷ୍ଠାନରେ ବ୍ରତୀହୁଏ, ତେବେ ସତ୍‌ଫଳ ପ୍ରାପ୍ତ ହୁଏ । ଅସତ୍ କର୍ମରେ ଲିପ୍ତ ଥିଲେ ଅସଦ୍ ଫଳ ଭୋଗକରେ, ଯେପରି କି ଉପଯୁକ୍ତ ମୂଳଭିତ୍ତି ଦ୍ୱାରା ପ୍ରାସାଦ ନିର୍ମାଣ କଲେ, ତାହା ସହଜରେ ନଷ୍ଟହେବାର ଭୟର କାରଣ ନ ଥା[illegible] ସେହିପରି ମାନବର ପ୍ରାଥମିକ ଜୀବନ ନିଷ୍କଳଙ୍କ ଥିଲେ, ତାହାକୁ କଳଙ୍କ ସ୍ପର୍ଶ କରିବା ଅତି କଠିନତମ ଅଟେ, ସେଥିଯୋଗୁଁ ସେ ଅବଶ୍ୟ ବିପଦର ସମ୍ମୁଖୀନ ହୁଏ ନାହିଁ ।

ଅବହମାନକାଳରୁ ଯେଉଁ ଧର୍ମ ଈଶ୍ୱରଙ୍କ ଦ୍ୱାରା ଆଦିଷ୍ଟ ହୋଇ ଜନସମାଜରେ ପ୍ରସାର ଲାଭ କରିଛି । ପୁନଃ ସେହି

ଧର୍ମର ବୀଜ ପାରମ୍ପାରିକାନୁଯାୟୀ ଭାବି ବଂଶଧରଗଣଙ୍କ ହୃଦୟ କ୍ଷେତ୍ରରେ ରୋପଣ କରାଯାଇଅଛି, ତାହା ଅନାବୃଷ୍ଟି ବା ଅନାବୃଷ୍ଟି ନ୍ୟାୟ ଅନ୍ୟ ଧର୍ମର ପ୍ରଭାବରେ ବା ସ୍ୱଧର୍ମର ପୁନରାଲୋଚନା ଅଭାବରୁ ଯଦି ନଷ୍ଟ ହୋଇଯାଏ, ତେବେ ମୋହାନ୍ଧ ମାନବର ବା ଗତି କେଉଁଠି ? ସ୍ୱଇଚ୍ଛା ବଶତଃ ହସ୍ତସ୍ଥିତ ଅମୂଲ୍ୟ ରତ୍ନକୁ ଅତଳଗଭୀର ଜଳେ ନିକ୍ଷେପ କରି, ଅନ୍ୟଠାରୁ ଧନପ୍ରାପ୍ତ ଆଶାରେ ତଦୀୟ କୃପାଭିଳାଷୀ ହୋଇ କଷ୍ଟଭାଗୀ ହେବା ମାନବ ପକ୍ଷେ ନିତାନ୍ତ ଦୂଷଣୀୟ ଅଟେ ।

ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି :—

"ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍,
ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋଭୟାବହଃ ।

ହେ ଅର୍ଜୁନ ! ସ୍ୱଧର୍ମରେ ମରଣ ବରଂ ଶ୍ରେୟସ୍କର, ପରଧର୍ମ କଦାପି ଗ୍ରହଣୀୟ ନୁହେଁ, କାରଣ ପ୍ରତ୍ୟେକ ଧର୍ମରେ କିଛି ନା କିଛି ଦୋଷ ଗୁଣ ପରିଲକ୍ଷିତ ହୁଏ ।

---

## ଦ୍ୱିତୀୟ ପରିଚ୍ଛେଦ

### ଜନ୍ମ

ହେ ମଙ୍ଗଳମୟ ! ଧନ୍ୟ ତୁମ୍ଭ ମଙ୍ଗଳ ବିଧାନ, ତୁମ୍ଭର ନିତ୍ୟଲୀଳାମୟ ମହିମା ଉପଲବ୍ଧି କରିବାରେ କାହାର କ୍ଷମ ? ତୁମ୍ଭେ ପ୍ରାଣୀମାନଙ୍କ ମଙ୍ଗଳ ନିମିତ୍ତ କେଉଁଠାରେ କେତେବେଳେ ଅବିର୍ଭାବ ହୋଇ ତୁମ୍ଭର ବିଚିତ୍ର ଲୀଳା ପ୍ରକାଶ ଦ୍ୱାରା ପଥହରା ନାସ୍ତିକ ମାନବଗଣଙ୍କୁ ସତ୍ୟ ଓ କର୍ତ୍ତବ୍ୟ ପଥ ପ୍ରଦର୍ଶନ କରାଇ ଆସ୍ତିକ ଭାବ ଅନୁଷ୍ଠାନ ପୂର୍ବକ ଜଗତର ମହୋପକାରୀ ସାଧନ କର ତାହା ତୁମ୍ଭକୁହିଁ ଜଣା !

ଏହି ପୁଣ୍ୟ ଭୂମି ଉତ୍କଳ ପ୍ରଦେଶସ୍ଥ ଶତ୍ରୋପୃଲା ଉକ୍ଷିଣୀ ଉଦସ୍ଥିତ ନେମ୍ପାଲ ନିକଟସ୍ଥ ପଟଣା ନାମେ ଗୋଟିଏ ଗ୍ରାମ ଅଛି । ପ୍ରାୟ ଶହଶତ ପଚାଶ ବର୍ଷ ପୂର୍ବେ ସେଠାରେ ଦୀନବନ୍ଧୁ ନାମଧେୟ ଜଣେକ ମଧ୍ୟବିତ୍ତ ଶ୍ରେଣୀସ୍ଥ ବ୍ୟକ୍ତି ବାସ କରୁଥିଲେ । ସମ୍ଭ୍ରାନ୍ତ କରଣ ବଂଶରେ ତାହାଙ୍କର ଜନ୍ମ । ସେ ପ୍ରତ୍ୟେକ ଶ୍ରେଣୀସ୍ଥ ଲୋକମାନଙ୍କ ମଧ୍ୟରେ ମାନ୍ୟ ଗଣ୍ୟ ବ୍ୟକ୍ତି ଥିଲେ ସୁଦ୍ଧା ତାଙ୍କ ମନକୁ ଆଦୌ ଅହଂଭାବ ସ୍ପର୍ଶ କରି ନଥିଲା । ସେ ସର୍ବଦା ପର ଦୁଃଖ ମୋଚନ ନିମିତ୍ତ ତତ୍ପର ହେଉଥିଲେ । ସେ ସାଧୁ, ସୁଶୀଳ, କର୍ତ୍ତବ୍ୟନିଷ୍ଠ, ଉଦାରହୃଦୟ ଓ ଧର୍ମପରାୟଣ ଥିବାରୁ ଆବାଳ ବୃଦ୍ଧ ଆଚଣ୍ଡାଳ ବ୍ରାହ୍ମଣ ପର୍ଯ୍ୟନ୍ତ ସମସ୍ତେ ତାହାଙ୍କୁ ସ୍ନେହ ଓ ଭକ୍ତି କରୁଥିଲେ । ସେ ଆର୍ଯ୍ୟର ପବିତ୍ର ସନାତନ ଧର୍ମକୁ ଶଧୂବ[redacted]ବେ ପାଳନ କରିବାକୁ ଆଦୌ ତ୍ରୁଟି କରନ୍ତି ନାହିଁ । ତାହାଙ୍[redacted]ବନରେ ଦୈନନ୍ଦିନ ପଞ୍ଚମହାଯଜ୍ଞ ସମାଧା କରିବା ପ୍ରଧାନ କର୍ତ୍ତବ୍ୟଥିଲା, ଯଥା:—ଦେବଯଜ୍ଞ, ପିତୃଯଜ୍ଞ, ବ୍ରହ୍ମଯଜ୍ଞ, ମାନବଯଜ୍ଞ ଓ ଭୂତଯଜ୍ଞ (୧) ପିତୃଯଜ୍ଞ—ପ୍ରତ୍ୟୁଷରୁ ଶଯ୍ୟା ତ୍ୟାଗ ପୂର୍ବକ ପରମାତ୍ମା ପରମେଶ୍ୱରଙ୍କୁ ସ୍ମରଣ କରି ପ୍ରାତଃକୃତ୍ୟ ସ୍ନାନାଦି କଲାବେଳେ ନାଭି ପର୍ଯ୍ୟନ୍ତ ଜଳରେ ରହି ତିଳାଦି ଉପକରଣ ସହ ପିତୃଗଣ ସନ୍ତୁଷ୍ଟାର୍ଥେ ପିତୃତର୍ପଣ କରିବା (୨) ଦେବଯଜ୍ଞ ସ୍ନାନାନ୍ତେ ହୋମ ଇତ୍ୟାଦି କର୍ମ ସମାଧା କରିବାଦ୍ୱାରା ଦେବତାଙ୍କୁ ସନ୍ତୁଷ୍ଟ କରି[redacted] (୩) ବ୍ରହ୍ମଯଜ୍ଞ—ପ୍ରତ୍ୟହ ଭଗବତ ଗୀତାଦି ପାଠ ଓ ବ୍ୟାଖ୍ୟା[redacted] କରିବା (୪) ମାନବଯଜ୍ଞ—ଉପଯୁକ୍ତ ସମୟରେ ଅତିଥିମାନଙ୍କୁ ପାନାହାର ଦେଇ ସନ୍ତୁଷ୍ଟ କରିବା । (୫) ଭୂତଯଜ୍ଞ—ଗୃହରେ ପଶୁ ପକ୍ଷୀ ପ୍ରଭୃତିଙ୍କୁ ଖାଦ୍ୟପାନ ଦ୍ୱାରା ସନ୍ତୋଷ କରାଇବା ।

ଦୀନବନ୍ଧୁ ନିରହଙ୍କାର ଓ ନିର୍ଲୋଭରେ ଜୀବନ ଯାପନ କରୁଥିଲେ ଓ ନିରାମିଷ ଭୋଜୀଥିଲେ । ଉପରୋକ୍ତ ପଡ଼ଙ୍କର

ପଦ୍ମାବତୀ ଉପଯୁକ୍ତ ପତ୍ନୀ, ସେ ନିର୍ମଳ ଦର୍ପଣରେ ଅବିକଳ ପ୍ରତିବିମ୍ବ ସଦୃଶ ଦୀନବନ୍ଧୁଙ୍କ ଜୀବନକୁ ଅଳଙ୍କୃତ କରୁଥିଲେ । ସେ ସ୍ୱାମୀଙ୍କ ପଦାଙ୍କ ଅନୁସରଣରେ ଯେପରି ନିପୁଣା, ଅଟଳ ପତି ଭକ୍ତିରେ ସେହିପରି ଆଦର୍ଶ ସ୍ଥାନୀୟା ଥିଲେ । ନାରୀ ସୁଲଭ କୋମଳତା, ବିବିଧ କର୍ମ ନିପୁଣତା, ପର ଦୁଃଖ ମୋଚନ ତତ୍ପରତା, ବିଚକ୍ଷଣୀ ଧୀମତୀ, ତାହାଙ୍କର ଭୂଷଣ ଥିଲା । ପତି ପତ୍ନୀ ଉଭୟ ଏକ ପଥରେ ଏକ ପ୍ରାଣରେ ସଂସାର ଯାତ୍ରା ନିର୍ବାହ କରୁଥିଲେ ।

ନିରବଚ୍ଛିନ୍ନ ସୁଖ ସଂଭୋଗ ମାନବ ଜୀବନରେ ସୁଲଭ ନୁହେଁ । ଦୀନବନ୍ଧୁଙ୍କର ପୁତ୍ର ସନ୍ତାନ ନ ଥିଲା । ତେଣୁ ପତି ପତ୍ନୀ ଉଭୟଙ୍କର ମୁଖମଣ୍ଡଳ ସର୍ବଦା ବିଷାଦ କାଳିମାର ଚିହ୍ନ ବାହାରକୁ ସଦା ଫୁଟି ଦିଶୁଥିଲା ।

ଦୈନନ୍ଦିନ କର୍ମ ଶେଷେ ବିଶ୍ରାମ ସମୟରେ ଉଭୟଙ୍କ ହୃଦୟର ଗଭୀରତମ ପ୍ରଦେଶରୁ ଘନ ଘନ ଉଷ୍ଣ ନିଃଶ୍ୱାସ ବାହାରିଲା ହେଉଥିଲା, ଭବିଷ୍ୟତ ବଂଶ ରକ୍ଷା, ଚିନ୍ତାରେ ପ୍ରାଣ ସଦା ବିକଳ ହୋଇ ଉଠୁଥିଲା । ପତି ପତ୍ନୀ ଉଭୟଙ୍କୁ ଏହି ଦୁଃଖ ନୈରାଶ୍ୟ ସାଗରରେ ନିକ୍ଷେପ କରିଥିଲା ।

ଆଶା ତାହାଙ୍କୁ ପରିତ୍ୟାଗ କଲା ନାହିଁ । ଦୀନବନ୍ଧୁ ଧ୍ୟାନ କାମୀ ହୋଇ ନୀଳାଚଳବିହାରୀ ଜଗତପିତା ଜଗନ୍ନାଥଙ୍କୁ ଧ୍ୟାନ ଦ୍ୱାରା ହୃଦୟ ମଧ୍ୟେ ସ୍ଥାପନ କରି ପ୍ରାର୍ଥନା କରିବାକୁ ଲାଗିଲେ । ପଦ୍ମାବତୀ ମଧ୍ୟ ସେହିପରି ଦେବୀ ଆରାଧ୍ୟ ପ୍ରାର୍ଥନା କଲେ ।

ଭାବକୁ ନିକଟ ମୁରାରି
ଅଭାବେ ନୁହନ୍ତି କାହାରି,

ଦୀନବନ୍ଧୁଙ୍କ ସ୍ତବରେ ଜଗତ ପିତା ଜଗନ୍ନାଥଙ୍କ ଆସନ ଟଳମଳ ହେଲା । ସେ ସ୍ଥିର ହୋଇ ମୁହୂର୍ତ୍ତେ ମାତ୍ର ରହି ପାରିଲେ ନାହିଁ । ନୀଳାଚଳ ଚନ୍ଦ୍ର ଦୀନବନ୍ଧୁଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହିଲେ—

ବନ୍ଧୁ ! "ତୁମ୍ଭେ କରୁଣା ଓ ସ୍ତବ ଦ୍ୱାରା ଆମ୍ଭମନ ଆକର୍ଷଣ କରି ପାରିଛ । ତୁମ୍ଭେ ପରୋପକାର ବ୍ରତ ବହୁ ଆୟାସ ସହେ ପାଳନ କରିଥିବା ହେତୁ, ଫଳପ୍ରାପ୍ତିର ହକଦାର ଅଟ । ଶ୍ରୀକ୍ଷେତ୍ର ଗମନ କର । ସେଠାରେ ତୁମ୍ଭ ବାଞ୍ଛିତ ଧନ ଆମ୍ଭ ସମ୍ମୁଖରେ ଅବଶ୍ୟ ପାଇବ । ମନେ ରଖ, ଐଶ୍ୱର୍ଯ୍ୟ ମଦରେ କଦାପି ମୋହ ହେବ ନାହିଁ ।" ଏହା କହି ଭଗବାନ ଅନ୍ତର୍ଦ୍ଧାନ ହେଲେ ।"

ଦୀନବନ୍ଧୁ ପ୍ରତ୍ୟକ୍ଷ ବରପ୍ରାପ୍ତ ହେବା ମାତ୍ରେ, ତାହାଙ୍କର ଅନ୍ତର ଆତ୍ମାରୁ ଅସୀମ ଆନନ୍ଦ ଉଦ୍ଭବ ହୋଇ ପ୍ରେମବାରି ଉଚ୍ଛ୍ୱସିତ ହେଲା । ଦୀନବନ୍ଧୁ ଜୀବନକୁ ଧନ୍ୟ ମନେ କରି ପୁନଃ ପୁନଃ ଜଗନ୍ନାଥଙ୍କ ଗୁଣ ଗାନ କରିବାକୁ ଲାଗିଲେ । ପ୍ରାଣ ସମା ପତ୍ନୀ ମଧ୍ୟ ଏହା ଶ୍ରବଣ କରି ତାହାଙ୍କର ହୃଦୟ ମଧ୍ୟ ଆନନ୍ଦରେ ନାଚି ଉଠିଲା ।

ବାସ୍ତବିକ୍ ଆନନ୍ଦ ହେବାର କଥା, ଦୁଃଖ ସବୁଦିନେ ରହେ ନାହିଁ । ଦୁଃଖ ପରେ ସୁଖ, ସୁଖ ପରେ ଦୁଃଖ, ପର୍ଯ୍ୟାୟ କ୍ରମେ ଲାଗି ଅଛି । ପତି ପତ୍ନୀ ଉଭୟ ଜଗନ୍ନାଥଙ୍କ ଗୁଣାବଳୀ କଥୋପକଥନ ହେଉ ହେଉ ରାତ୍ରି ଅବସାନ ହେଲା । ସେମାନଙ୍କର ସେହି ସୁଖମୟ ରଜନୀଟି ଶୀଘ୍ର ଶେଷ ହୋଇଗଲା ପରି ବୋଧ ହେଲା । ଦୀନବନ୍ଧୁ ପ୍ରତ୍ୟୁଷରୁ ସ୍ନାନଦାନ, ଦେବ ପୂଜନ ଇତ୍ୟାଦି ନିତ୍ୟ ନୈମିତ୍ତିକ କାର୍ଯ୍ୟ ଶେଷ କରି ନିର୍ମଳ ଦର୍ପଣର ଅବିକଳ ପ୍ରତିବିମ୍ବ ସଦୃଶ ହୃଦୟରେ ଜଗନ୍ନାଥ ମୂର୍ତ୍ତିଙ୍କୁ ଲକ୍ଷ୍ୟ [illegible] ଭାରତର ପୁଣ୍ୟଭୂମି ଶ୍ରୀକ୍ଷେତ୍ରାଭିମୁଖେ ପ୍ରସ୍ଥାନ କଲେ । ଜନ୍ମ[illegible] [illegible] ପଞ୍ଚବିଂଶ କୋଶ ବ୍ୟବଧାନରୁ କମ୍ ନୁହେଁ । ବର୍ତ୍ତମାନ ପରି ସେ ସମୟରେ ଯାନ ବାହାନର ସୁବିଧା ନ ଥିଲା । ସେ ତାଙ୍କ ଜୀବନରେ ଅଶ୍ୱ ବା ଶକଟ ଆରୋହଣକୁ ପାପ ଅର୍ଜନର ନିର୍ମଳ ପଥ ସଦୃଶ ମନେ କରୁଥିଲେ । ଏଣୁ ପଦବ୍ରଜେ ଧୀରେ ଧୀରେ ଗୃହରୁ ଗମନ କରିବାକୁ ଲାଗିଲେ । ସେ ପଥରେ ପୂର୍ଣ୍ଣକୁମ୍ଭ ଧେନୁବତ୍ସା

ପ୍ରଭୃତି କେତେକ ଶୁଭ ଚିହ୍ନ ନିରୀକ୍ଷଣ କରି ମନର ଆଶା ଓ ଆନନ୍ଦ ଅଧିକାଧିକ ହୋଇ ଉଠିଲା । କ୍ରମେ କ୍ରମେ ନିକଟ ଗ୍ରାମଟି ମଧ୍ୟ ଅଦୃଶ୍ୟ ହେଲା । ଏଣେ ପଦ୍ମାବତୀ ସ୍ୱାମୀଙ୍କର ଶ୍ରୀକ୍ଷେତ୍ର ପ୍ରବେଶ ଓ ପ୍ରତ୍ୟାଗମନର ପ୍ରତୀକ୍ଷାରେ ରହିଲେ ।

ଦୀନବନ୍ଧୁ ଶ୍ରୀକ୍ଷେତ୍ରର ନିକଟବର୍ତ୍ତୀ ହେବାରୁ ନୀଳଚକ୍ରରେ ଫର ଫର ହୋଇ ଉଡୁଥିବା ପତିତପାବନ ପତାକାଟି ଦେଖି ଆବେଗ ପ୍ରାଣରେ ପ୍ରଭୁଙ୍କ ଦର୍ଶନ ନିମିତ୍ତ ଧାବିତ ହେଲେ । " ଜଗନ୍ନାଥ ସ୍ୱାମୀ କି ଜୟ " ଏହି ଧର୍ମ-କଣ୍ଠ-ଧ୍ୱନି ତାହାଙ୍କର ଶ୍ରୁତି ଗୋଚର ହେଲା, ଅତ୍ୟଳ୍ପ ସମୟ ମଧ୍ୟରେ ବଡ଼ଦାଣ୍ଡରେ ପ୍ରବେଶ ହୋଇ ଦେଖିଲେ—ସହସ୍ର ସହସ୍ର ନର ନାରୀ ଜଗନ୍ନାଥ ଦର୍ଶନାଭିଳାଷୀ ହୋଇ ଏହି ଜୟନାଦ କରୁ ଅଛନ୍ତି । ସମସ୍ତ ଯାନି ଯେ ଏହି ଉତ୍କଳ ପ୍ରଦେଶର ତାହା ନୁହେ, ଏମାନେ ଭାରତର ବିଭିନ୍ନ ଅଞ୍ଚଳର ଅଟନ୍ତି ।

ସିଂହଦ୍ୱାର ଲୋକାରଣ୍ୟ, ଦର୍ଶନାଭିଳାଷୀ ଆଗନ୍ତୁକ ଦର୍ଶକ ଗଣ ଦର୍ଶନ ନିମିତ୍ତ ବ୍ୟାକୁଳ ଚିତ୍ତରେ ଗମନେଚ୍ଛା ହେବା, ଓ ଦର୍ଶନ ଲାଭରୁ ପ୍ରତ୍ୟାଗମନ କରୁଥିବା ଯାତ୍ରୀମାନଙ୍କ ମଧ୍ୟେ ଘୋର ସଂଘର୍ଷ ସଙ୍ଘଟିତ ହୋଇ କଥୋପକଥନର କୋଳାହଳ ଧ୍ୱନିରେ ଶ୍ରବଣେନ୍ଦ୍ରିୟ ଜଡ଼ ହୋଇ ଯାଉଥିଲା । ଏହି ଭୀଷଣ ସମାଗମ ସଂଘର୍ଷକୁ ପ୍ରତିରୋଧ କରିବା କି ସହଜ କଥା ? ତେବେ ଦୁଇଜଣ ପ୍ରହରୀ, ହସ୍ତରେ ବେତ ଧାରଣ ପୂର୍ବକ ଯଥାକଥିତ ଦୁର୍ବଳ ଯାତ୍ରୀଙ୍କ ଦୁଃଖ ଅବମୋଚନ କରୁଥାନ୍ତି । ଦୀନବନ୍ଧୁ ବହୁ ଆୟାସ ସହିତ ସେହି ପଥ ଅତିକ୍ରମ କଲେ ।

ସେତିକିବେଳେ ଶଙ୍ଖ, ଘଣ୍ଟା ପ୍ରଭୃତି ବାଜି ଉଠିଲା । ଦୀନବନ୍ଧୁ ଦେଉଳ ମଧ୍ୟରେ ପ୍ରବେଶ କରି ଦେଖିଲେ—ସନ୍ଧ୍ୟାରତିରେ ସେବକଗଣ ଯୋଗ ଦେଇ ନିଜ ନିଜ କାର୍ଯ୍ୟ ପୂରଣ

କରୁଛନ୍ତି । ଅସଂଖ୍ୟ ଅସଂଖ୍ୟ ଯାତ୍ରୀ ପ୍ରଭୁଙ୍କୁ ଦର୍ଶନ କରି ଜୀବନକୁ ସାର୍ଥକ ମନେ କରୁଛନ୍ତି । ଦୀନବନ୍ଧୁ ସିଂହାସନ ନିକଟରେ ଦଣ୍ଡାୟ[redacted] ମାନ ହେଲେ । ସେ କପରି ସେହି ଅମୂଲ୍ୟ ଧନଟି ବଳେ[redacted] କରି ନେବେ ନୟନର ଆଶା ପୂରଣ କରିବେ, ସେଥିପ[redacted] ତାହାଙ୍କର ଚିତ୍ତ ଭାରି ଉଦ୍‌ବେଗ ।

ବାଞ୍ଛିତ ଧନଟି ନ ଦେଖି ଦୀନବନ୍ଧୁ ଦୁଃଖିତ ହୋଇ ଜଗନ୍ନାଥଙ୍କୁ ପୁନଃ ପୁନଃ ପ୍ରାର୍ଥନା କଲେ, ସେ ତ ଅନ୍ତର୍ଯ୍ୟାମୀନାଥ ସମସ୍ତଙ୍କର ଅନ୍ତର କଥା ତାହାଙ୍କୁ ଜଣା । ସେ ଦୀନବନ୍ଧୁଙ୍କ ଅନ୍ତର ବ୍ୟଥା ଜାଣି ତାହାଙ୍କର ଜ୍ଞାନଚକ୍ଷୁ ଉନ୍ମୀଳନ କଲେ, ସେ ଦେଖିଲେ —ଗୋଟିଏ ଶିଶୁ-ମୂର୍ତ୍ତି ସିଂହାସନ ତଳେ ଖେଳୁଛନ୍ତି; ଦୀନବନ୍ଧୁ ସ୍ୱ କୋଡ଼କୁ ଶିଶୁଟିକୁ ଆନୟନ କରିବା ନିମିତ୍ତ ହସ୍ତ ପ୍ରସାରଣ କରନ୍ତେ, ଶିଶୁଟି ତତ୍‌କ୍ଷଣାତ୍ ଅଦୃଶ୍ୟ ହେଲା । ଅଦ୍ଭୁତ ଘଟଣା ଦର୍ଶନକରି ତାହାଙ୍କର କ୍ଷେତ୍ର ଗମନ ସଫଳ ହୋଇଛି ବୋଲି ଭାବି, କହିଲେ

ଦେବା ଦଅଇବାକୁ ହରି,
କରତା ଅଛନ୍ତି ସଂସାରି,

ଦୀନବନ୍ଧୁ ପରଦିବସ ପ୍ରତ୍ୟୁଷରୁ ଗାତ୍ରୋତ୍ଥାନ, ପ୍ରାତଃସ୍ନାନ, ଦେବ ପୂଜନ ଇତ୍ୟାଦି ପ୍ରାତଃକୃତ୍ୟ, ପୁନଃ ପ୍ରଭୁଙ୍କ ଦର୍ଶନ ସାରି ଗୃହାଭିମୁଖେ ଯାତ୍ରା କଲେ ବାସଭବନରେ ଉପସ୍ଥିତ ହୋ[redacted] ପ୍ରିୟବତୀ ସ୍ତ୍ରୀଙ୍କ ଆଗେ କ୍ଷେତ୍ର ଘଟଣା ଆମୂଳ ଚୂଳ ବର୍ଣ୍ଣନା କ[redacted] ପଦ୍ମାବତୀ ମଧ୍ୟ ଶୁଣି କୃତ୍ୟ କୃତ୍ୟ ହେଲେ । ଉଭୟ ମନସୁଖରେ ଦିନପାତ କଲେ, କେତେକ ଦିନ ପରେ ପଦ୍ମାବତୀଙ୍କ ଗର୍ଭ ଉଦୟ ହେଲା ।

ସମୟ କାହାକୁ ଅପେକ୍ଷା କରେ ନାହିଁ । ଦରିଦ୍ରର ଦୁଃଖ ଦେଖି ତାହାର ଗତି ଚଞ୍ଚଳ ବା ମୁକୁଟଧାରୀ ରାଜାଙ୍କର ଅତୁଳ

ସୂଚୀ ଭୋଗରେ ଲିଖିଲ ହୁଏ ନାହିଁ । ସେ ଗାହାର ଅନନ୍ତ ପଥରେ ଶାଶ୍ୱତ ନିୟମରେ ଗତି କରୁଥାଏ, ସ୍ତ୍ରୀହୁଁ ଗୃହୁଁ ପଦ୍ମାବତୀ ଆସନ୍ନ-ପ୍ରସବା ହେଲେ । ପ୍ରସବର ଦିନ ଯେତେ ନିକଟବର୍ତ୍ତୀ ହେଉଥାଏ, ତାହାଙ୍କର ମୁଖମଣ୍ଡଳରେ ଅଭିନବ ଲାବଣ୍ୟ ଲେଖଳି ଫୁଟି ଉଠୁଥାଏ । ଯଥା ସମୟରେ ଦୀନବନ୍ଧୁଙ୍କ ଅନ୍ଧକାର ପ୍ରକୋଷ୍ଠ ମଧ୍ୟରେ ଉଜ୍ଜ୍ୱଳ ମୟୂଖ ରୂପେ ହୃଦୟ-ଗଗ-ନର ଧ୍ରୁବତାରା ରୂପେ, ଉଷାଦେବୀଙ୍କ ମସ୍ତକର ସମୁଜ୍ଜ୍ୱଳ ମଣି ରୂପେ କଲ୍ୟାଣୀ ୧୫୯୫ ଅବ୍ଦର ମାଘ ଶୁକ୍ଳ ଏକାଦଶୀରେ ପଦ୍ମାବତୀ ଗୋଟିଏ ପୁତ୍ରସନ୍ତାନ ପ୍ରସବ କଲେ । ଶୁଭ ଲଗ୍ନ ଜାତ ଶୁଭ କୁମାରର ମୁଖଚନ୍ଦ୍ର ନିରୀକ୍ଷଣ କରି ଦୀନବନ୍ଧୁଙ୍କ ଆନନ୍ଦ-ସିନ୍ଧୁ ଉଚ୍ଛୁଳି ଉଠିଲା । ବିଷାଦ-କାଳିମା ଅପସାରିତ ହୋଇ ପତି ପତ୍ନୀ ଉଭୟଙ୍କର ବଦନ ମଣ୍ଡଳ ଅପୂର୍ବ ଶ୍ରୀ ଧାରଣ କଲା । ଉଭୟ ମନେ ମନେ ଜଗନ୍ନାଥଙ୍କ ପ୍ରତିମୂର୍ତ୍ତିକୁ ହୃଦୟ ମଧ୍ୟରେ ଧ୍ୟାନ କରିବାକୁ ଲାଗିଲେ । ବାଳକ-ବାଳିକା ମାନଙ୍କୁ ମିଷ୍ଟାନ୍ନ ଦ୍ୱାରା ଓ ଦରିଦ୍ରମାନଙ୍କୁ ଅନ୍ନବସ୍ତ୍ର ଦ୍ୱାରା ସନ୍ତୁଷ୍ଟ କରାଇଲେ । ଯଥା ସମୟରେ ନବଜାତ କୁମାରର ନାମ କରଣ ହେଲା —ଅଚ୍ୟୁତ

—–—✱——–

## ତୃତୀୟ ପରିଚ୍ଛେଦ

### ବାଲ୍ୟ ଜୀବନ

ଭାଗ୍ୟ ରବି ଉଦୟ ହେଲେ ଅମା ଅନ୍ଧକାର ରୂପ ଦୁଃଖ ସମୂହ ମୁହୂର୍ତ୍ତେ ମାତ୍ର ବିଳମ୍ବ ନ କରି ଦୂରୀଭୂତ ହୁଏ । ଶୁକ୍ଳପକ୍ଷର ଶଶୀକଳାପରି ଅଚ୍ୟୁତ ଦିନୁଦିନ ବଢ଼ି ମାତା ପିତାଙ୍କର ସୁଖ ବଢ଼ାଇଲେ । ପିତା ମାତା ଅମୂଲ୍ୟ ଧନରୂପ ପୁତ୍ରକୁ ସସ୍ନେହେ ନିଜ ନିଜ କୋଡ଼ରେ ଦେଇ ଜୀବନକୁ ସାର୍ଥକ ମଣିନ କଲେ । ଦୁଃଖର ଛାୟା ମାତ୍ର ରହିଲା ନାହିଁ ।

ଦୈବୀ ଶକ୍ତି ସ୍ୱଭକର ଯେଉଁମାନେ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଥାନ୍ତି, ସେମାନଙ୍କ ଜୀବନର ପ୍ରାରମ୍ଭରୁ ଭବିଷ୍ୟତର ସୂଚ ମିଳିଥାଏ । "ତୁଳସୀ ଦୁଇପତ୍ରରୁ ବାସେ" ଅଚ୍ୟୁତ ଯେ ଭବି ଷ୍ୟତରେ ଜଣେ ମହାପୁରୁଷ ବୋଲି ପରିଚିତ ହେବେ, ତାହା ତାହାଙ୍କ ଶିଶୁ ଜୀବନରୁ ଅନୁମିତ ହେଉଥିଲା । ମୁଖ ମଣ୍ଡଳ ଜ୍ୟୋତି, ଅତୁଳନୀୟ ରୂପ, ସରଳ ସ୍ୱଭାବ ଦ୍ୱାରା ସେ ସମସ୍ତଙ୍କୁ ମୁଗ୍ଧ କରୁଥିଲେ । କ୍ରମେ କ୍ରମେ ଏକ ଦୁଇ ତିନି ବର୍ଷ ଅତିବାହିତ ହେଲା । ପିତା ମାତା ହର୍ଷୋତ୍‌ଫୁଲ୍ଲ ଚିତ୍ତରେ କୁଳ ପ୍ରଥାନୁଯାୟୀ ପୁଂସବନ, ଗର୍ଭାଧାନ, ଜାତ କରଣୀ, ଚୂଡ଼ା କର୍ମ, ଅନ୍ନ ପ୍ରାସନ ଆଦି କର୍ମମାନ ଯଥା ସମୟରେ ସମାଧାନ କରୁଥାନ୍ତି । ଏହି ଅତ୍ୟଳ୍ପ ବୟସରୁ ମଧ୍ୟ ତାହାଙ୍କର ଅସୀମ ଧୀମତାର ପରିଚୟ ମିଳୁଥିଲା । ସେ ଥରେ ଯାହା ଶୁଣୁଥିଲେ, ତାହା, ତାହାଙ୍କର ସ୍ମୃତିପଟରେ ଅକ୍ଷୟ ଅକ୍ଷରରେ ଅଙ୍କିତ ହୋଇ ରହୁଥିଲା । ଗୃହ-ବର୍ଷ ଗୃହମାସ, ଗୃହଦିନ ଶୁଭ ମୁହୂର୍ତ୍ତରେ ତାହାଙ୍କର ବିଦ୍ୟାରମ୍ଭ ଯଥାସମାରୋହରେ ସମାପିତ ହେଲା । ସେ ବିଦ୍ୟାଳୟକୁ ଗମନ କରି ବିଦ୍ୟାଧ୍ୟୟନ କରିବାକୁ ଲାଗିଲେ । ସେ ତାହାଙ୍କର ପ୍ରଖର ଧୀଶକ୍ତି ଦ୍ୱାରା ଛାତ୍ର ସମାଜରେ ପ୍ରଥମସ୍ଥାନ ଅଧିକାର କରି ଅବଧାନ ମହୋଦୟଙ୍କୁ ମଧ୍ୟ ସନ୍ତୋଷ କରିପାରୁଥିଲେ ।

ସେ ବଡ଼ ଲଜ୍ଜାଶୀଳ ବାଳକ; କାହାରି ସମ୍ମୁଖରେ ଦଣ୍ଡାୟମା ରହି ଉକ୍ତିପ୍ରତ୍ୟୁକ୍ତି କରିବାକୁ ଆଦୌ ଭଲ ପାଆନ୍ତି ନାହିଁ ଅନ୍ୟାନ୍ୟ ବାଳକମାନଙ୍କ ପରି ଖେଳ କୌତୁକରେ ଆଦୌ ମନ ଦେଉନ୍ତି ନାହିଁ । କାହାରି ସହିତ ଗ୍ରାମ୍ୟ ଗଳ୍ପରେ ମଧ୍ୟ ସମୟାତିପାତ କରନ୍ତି ନାହିଁ । ସେ ନିର୍ଜ୍ଜନରେ ବସିବାକୁ ଭଲ ପାଆନ୍ତି । ମାତା ପିତା; ପୁତ୍ରର ଏତାଦୃଶ ଉଦାସ ଉଦାସ ଭାବ ଦେଖି ବହୁ ପ୍ରକାର ଉତ୍ସାହ ବାଣୀ ପ୍ରୟୋଗ କରନ୍ତେ ମଧ୍ୟ ସେ

ତାହା କାର୍ଯ୍ୟରେ ପରିଣତ କରି ଦୂରେ ଥାଇ କର୍ଣ୍ଣପାତ କରନ୍ତି ନାହିଁ । ଜ୍ଞାତି କୁଟୁମ୍ବ ଗଣ ମଧ୍ୟ କେତେବେଳେ ଆଶା, କେତେବେଳେ ନିରାଶା ବାଣୀ ଶୁଣାଇବାକୁ ପଶ୍ଚାଦ୍‌ପଦ ହୁଅନ୍ତି ନାହିଁ । ସେ ସର୍ବଦା ଧ୍ୟାନମଗ୍ନ ଯୋଗୀର ସଦୃଶ କାଳାତିବାହିତ କରନ୍ତି ।

ଦୈବାତ୍ ଦିନେ ପିତାମାତା ଜଗତ୍‌ପିତା ଜଗନ୍ନାଥଙ୍କ ରଥ ଯାତ୍ରୋତ୍ସବ ବିଷୟ ପରସ୍ପରରେ କଥୋପକଥନ ହେଉଥିଲେ । ଅଚ୍ୟୁତ ତାହା ଅବଗତ ହୋଇ, ସେହି ଦେବଦେବଙ୍କ ଦର୍ଶନ ନିମିତ୍ତ ଜିଗର କଲେ । ପିତା ମାତାଙ୍କର ଏକମାତ୍ର ନୟନ ତାରାରୂପ ପୁତ୍ରଟି ଯେପରି ଆନନ୍ଦରେ କାଳ ହରଣ କରିବ, ତତ୍ପ୍ରତି ସେମାନେ ବିଶେଷ ଦୃଷ୍ଟି ଦେଉଥାନ୍ତି; ପୁତ୍ରର ଏତାଦୃଶ ଏକଜିଦ ପଣିଆକୁ ଉପେକ୍ଷା କରି ପାରିଲେ ନାହିଁ । ପିତା ପୁତ୍ରଙ୍କୁ ସଙ୍ଗରେ ନେଇ ପୁରୁଷୋତ୍ତମ କ୍ଷେତ୍ରକୁ ଯାତ୍ରା କଲେ । ଅଚ୍ୟୁତ ମଧ୍ୟ ହର୍ଷୋତ୍ଫୁଲ୍ଲ ଚିତ୍ତରେ ପିତାଙ୍କ ସଙ୍ଗେ ପ୍ରସ୍ଥାନ କରିବାକୁ ଲାଗିଲେ । ଗୃହର କେତେକ ଅସୁବିଧା ନେଇ ମାତା ଦେବ ଦର୍ଶନ ସୌଭାଗ୍ୟରେ ଭାଗୀ ହୋଇ ପାରିଲେ ନାହିଁ ।

ସେତେବେଳେ ଶ୍ରୀମାନ୍ ଚୈତନ୍ୟ ମହାପ୍ରଭୁ ଶ୍ରୀ କ୍ଷେତ୍ରକୁ ପଦାର୍ପଣ କରିଥିଲେ । ପଣ୍ଡିତମାନଙ୍କ ଉଦ୍ଧାର ନିମିତ୍ତ ଚତୁର୍ଦ୍ଦିଗ ଭାଗବତ ମହିମା ଧ୍ୱନିରେ ତାହାଙ୍କ ଦ୍ୱାରା ନିନାଦିତ ହେଉଥିଲା । ଶ୍ରୀମାନ୍ ମହାପ୍ରଭୁ ଚୈତନ୍ୟ ସ୍ୱୟଂ କୀର୍ତ୍ତନ ମଣ୍ଡଳୀ ମଧ୍ୟେ ବିଭୋର ହୋଇ ଆନନ୍ଦରେ ନାଚି ନାଚି ହରିନାମ ବିତରଣ କରୁଥିଲେ । ତାହାଙ୍କର ପ୍ରଚାରିତ ଧର୍ମ ଆଜି ଭାରତର ବିଭିନ୍ନ ଅଞ୍ଚଳର ପୁର ପଲ୍ଲୀରେ ମହା ଦୀପ୍ତିବନ୍ତ ହୋଇ ଉଠୁଅଛି ।

ପିତା ପୁତ୍ର ଉଭୟ କୀର୍ତ୍ତନ ମଣ୍ଡଳୀ ନିକଟରେ ଦଣ୍ଡାୟମାନ ହୁଅନ୍ତେ, ଶ୍ରୀମାନ୍ ମହାପ୍ରଭୁ ଚୈତନ୍ୟ, ବାଳକ ଅଚ୍ୟୁତଙ୍କୁ ଦେଖି, ହୃଦୟରେ ଅସୀମ ଆନନ୍ଦ ଅନୁଭବ କଲେ ।

'ଗୁଣି ଶଢେ଼ ଗୁଣିଅଁ'

ଅଚ୍ୟୁତଙ୍କ ସରଳ ହୃଦୟ ମଧ୍ୟ ଆନନ୍ଦ ସାଗରରେ ନିମଗ୍ନ ହେବାକୁ ଲାଗିଲା ।

"ଯା ମାୟା ଦେବେ ଅଗୋଚର
କାହୁଁ ଜାଣିବ ନର ଛାର"

ଦୀନବନ୍ଧୁ ପୁନର ହସ୍ତ ଧାରଣ ପୂର୍ବକ ଦଣ୍ଡାୟମାନ ହୋଇଥିଲେ ହେଁ, ମହାପ୍ରଭୁ ଚୈତନ୍ୟ ଓ ଅଚ୍ୟୁତଙ୍କ ମଧ୍ୟରେ ସଙ୍କେତ ଦ୍ୱାରା ଯାହା ବାକ୍ୟାଳାପ ହେଲା ତାହା ଜାଣି ପାରିଲେ ନାହିଁ ।

ଶ୍ରୀ ଚୈତନ୍ୟ ଦେବଙ୍କ ଇଙ୍ଗିତରେ ଶ୍ରୀମାନ୍ ସନାତନ ଗୋସ୍ୱାମୀ, ଶ୍ରୀମାନ୍ ଅଚ୍ୟୁତଙ୍କୁ ସ୍ନେହରେ କୋଳକରି ଉପଦେଶାମୃତ ପ୍ରଦାନ କଲେ । ତତ୍କ୍ଷଣାତ ଶ୍ରୀମାନ ଅଚ୍ୟୁତଙ୍କ ମୁଖମଣ୍ଡଳରୁ ଅତ୍ୟଧିକ ଅପୂର୍ବ ଦୀପ୍ତି ଓ ଶରୀରରୁ ସ୍ୱର୍ଗୀୟ ଜ୍ୟୋତି ବହିର୍ଗତ ହେଲା । ପିତା ପୁତ୍ର ଉଭୟ ଜଗନ୍ନାଥଙ୍କ ଦର୍ଶନ ଲାଭକରି ଗୃହାଭିମୁଖେ ପ୍ରତ୍ୟାଗମନ କଲେ ।



## ଚତୁର୍ଥ ପରିଚ୍ଛେଦ
## ବିବାହ ବନ୍ଧନ

ଅଚ୍ୟୁତ ପୌଗଣ୍ଡର ଶେଷ ପାଦରେ ପଦାର୍ପଣ କଲେ ସୁଦ୍ଧା ତତ୍କାଳୀନ ସୁଲଭ ଚପଳତା, ମାନସିକ ପ୍ରଫୁଲ୍ଲତା, ଉଚ୍ଛୃଙ୍ଖଳ ଭାବ ପ୍ରବଣତା, ତାହାଙ୍କଠାରେ ଆଦୌ ଦୃଷ୍ଟ ହେ[redacted] ନଥିଲା । ତାହାଙ୍କର ଧ୍ୟାନ ଶୀଳତା, ସଂସାର ପ୍ରତି ଉଦାସୀନତା, ଚିଦାନନ୍ଦ ମୟ ପରଂ ବ୍ରହ୍ମଙ୍କ ପ୍ରତି ଭକ୍ତିମତା ଦର୍ଶନ କରି, ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହେଉ ଥିଲେ । ସତେ ଯେପରି ତାହାଙ୍କର ହୃଦୟ ଅପୂର୍ବ ପ୍ରେମରସରେ ପ୍ଲାବିତ । ସେହି ତେଜୋମୟ ମୁଖ ମଣ୍ଡଳର ତେଜ ପୁଞ୍ଜ ଅହର୍ନିଶି ବର୍ଦ୍ଧିତ ହେଉଥିଲା । ପୁଣି ସେ ବାରମ୍ବାର

ଚିନ୍ତା କରୁଥିଲେ—କେବଳ ଆହାର ବିହାର ଓ ବିଷୟ ଲାଳସା ପରିତୃପ୍ତି, ଆମୋଦ ପ୍ରମୋଦ ସମ୍ଭୋଗ ବା ବିଳାସ ବ୍ୟସନ ଚରିତାର୍ଥ ନିମିତ୍ତ ଭଗବାନ ମନୁଷ୍ୟଙ୍କୁ ସୃଷ୍ଟି କରି ନାହାନ୍ତି । ମନୁଷ୍ୟ ଐଶୀଶକ୍ତି ପ୍ରଭାବରୁ ଜୀବ ଜଗତରେ ଶ୍ରେଷ୍ଠସ୍ଥାନ ଅଧିକାର କରି ପାରିଛି । ସେହି ଭଗବତ୍ ଶକ୍ତି ହେତୁ ମନୁଷ୍ୟ ସ୍ୱଚ୍ଛନ୍ଦେ ଆହାର, ବିହାର କରିବାକୁ, କଥା କହିବାକୁ ଏବଂ କାର୍ଯ୍ୟ କରିବାକୁ ସକ୍ଷମ ହୋଇଅଛି । ଶକ୍ତିମୟ ଭଗବାନ ସକଳ ଜୀବ ମଧ୍ୟରେ ବିହାର କରୁଅଛନ୍ତି । କିନ୍ତୁ ତାଙ୍କୁ ପାଇବାକୁ ମନୁଷ୍ୟର ଇଚ୍ଛା ବା ଚେଷ୍ଟା ନାହିଁ । ସତ୍ୟ ଓ ଅହିଂସା ପଥରେ ପଥିକ ନ ହୋଇ ମାନବ ସର୍ବଦା ମାୟା-ଯନ୍ତ୍ରରେ ନିଷ୍ପେଷିତ ହେଉଥିବାରୁ ଅଶେଷ ଯନ୍ତ୍ରଣା ଅକାତରେ ଭୋଗ କରୁଛି ।

ଅଚ୍ୟୁତଙ୍କୁ ସଂସାର ପ୍ରତି ପରାଙ୍ମୁଖ ଓ ଅନ୍ୟମନସ୍କ ଦେଖି ପିତାମାତାଙ୍କର ଆଉ ଦୁଃଖର ସୀମା ରହିଲା ନାହିଁ । ସେମାନେ ପୁତ୍ରକୁ ସଂସାରରେ ଆଶକ୍ତ ରଖିବା ପାଇଁ ବିବାହର ପ୍ରସ୍ତାବ ଆଗତ କଲେ । ଯେଉଁ ମହାପୁରୁଷଙ୍କର ମନୋଭୃଙ୍ଗ ବିଶ୍ୱ ପ୍ରେମ ମଧୁପାନ ପାଇଁ ସର୍ବଦା ଲାଳାୟିତ, ଜଗତକୁ ମୁକ୍ତି ଓ ସତ୍ୟର ପଥ ଦେଖାଇବା ପାଇଁ ଯାହାଙ୍କର ଜନ୍ମ, ସେ କି କେବେ ଐହିକ କ୍ଷଣସ୍ଥାୟୀ ଭୋଗ ବିଳାସ ପ୍ରତି ଆକୃଷ୍ଟ ହୋଇ ପାରନ୍ତି ? ତେବେ ପିତାଦେଶ ଅଲଂଘନୀୟ । ଜଗତର ନାନା ଶ୍ରେଣୀୟ ମାନବମାନଙ୍କ ମନରେ ଶାନ୍ତି ପ୍ରଦାନ ପୂର୍ବକ ସତ୍‌ପଥକୁ ଆନୟନ କରି, ତାହାଙ୍କର କର୍ତ୍ତବ୍ୟ ମନେ କରି ପିତା ମାତାଙ୍କ ଦ୍ୱାରା ଉପସ୍ଥାପିତ ହୋଇଥିବା ବିବାହ ପ୍ରସ୍ତାବକୁ ଗ୍ରହଣ କଲେ । ସେ ସମୟରେ ବାଲ୍ୟ ବିବାହକୁ ପବିତ୍ର ବିବାହ ରୂପେ ପସନ୍ଦ କରା ଯାଉଥିଲା । ଶ୍ରୀମାନ୍ ଅଚ୍ୟୁତାନନ୍ଦ ଜନୈକ ସମ୍ଭ୍ରାନ୍ତ କରଣ ବଂଶୀୟା ବାଳିକାର ପାଣିଗ୍ରହଣ କଲେ ।

---

## ପଞ୍ଚମ ପରିଚ୍ଛେଦ

## ଜ୍ଞାନ ପ୍ରାପ୍ତି

କୌଣସି ବିଶିଷ୍ଟ ଉଦ୍ଦେଶ୍ୟସାଧନ ନିମିତ୍ତ ଭଗବାନ ସିଦ୍ଧ ମହାପୁରୁଷଗଣଙ୍କୁ ସାମୟିକ ମର୍ତ୍ତ୍ୟଧାମରେ ଆବିର୍ଭାବ କରାଇ ଥାଆନ୍ତି । ତାହା ଯେପରି କାର୍ଯ୍ୟରେ ପରିଣତ ହେବ, ସେହି ଅପୂର୍ବ ମହାଭାବ; ସେମାନଙ୍କ ହୃଦୟ କନ୍ଦରେ 'ସ୍ୱୟଂ ବିକଶି ହୋଇ ବଢାଇ ଦିଅନ୍ତି । ମହାପୁରୁଷ ଅଚ୍ୟୁତାନନ୍ଦଙ୍କୁ, ପିତାମାତା ପୁତ୍ରରୂପେ ପାଇ ମହା ଆନନ୍ଦରେ ଦିନପାତ କରୁଥାନ୍ତି । ପିତାମାତାଙ୍କ ମନ ଭୁଲାଣିଆ କାର୍ଯ୍ୟରେ ଅଚ୍ୟୁତଙ୍କ ମନ ମାନୁ ନ ଥାଏ । ସେ ନିର୍ଜ୍ଜନରେ ନିରନ୍ତରେ ବସି ପରମାତ୍ମାପରବ୍ରହ୍ମ-ଈଶ୍ୱରଙ୍କୁ ଧ୍ୟାନ କରୁଥାନ୍ତି । ସାଙ୍ଗ ସାଥିରେ ଖେଳିବା ବୁଲିବା ତାଙ୍କୁ ଆଦୌ ଭଲ ଲାଗେ ନାହିଁ । ତାଙ୍କର ଚିତ୍ତ ମଧ୍ୟ ଚଞ୍ଚଳ ନୁହେ ନିଶ୍ଚଳ । ସେ ସନାତନ ଗୋସ୍ୱାମୀଙ୍କଠାରୁ ଉପଦେଶ ଗ୍ରହଣ କରି ମାଧବାଚାର୍ଯ୍ୟ ସମ୍ପ୍ରଦାୟରେ ଭୁକ୍ତ ହେବା ଦିବସରୁ ସମ୍ପ୍ରଦାୟ ନିୟମାନୁସାରେ ନିତ୍ୟ ନୈମିତ୍ତିକ କାର୍ଯ୍ୟ ସମାଧା କରନ୍ତି । ଅର୍ଥାତ୍

(୧)—ବିଷ୍ଣୁନାମ ସ୍ମରଣ ପୂର୍ବକ ଗାତ୍ରୋତ୍ଥାନ କରିବା ।

(୨)—ସୂର୍ଯ୍ୟଦେବଙ୍କୁ ମୁଖଧୌତ ପରେ ନମସ୍କାର କରିବା ।

(୩)—ବହିର୍ଦ୍ଦେଶ ଗମନ ନିମନ୍ତେ ମନ୍ତ୍ରପାଠ ପୂର୍ବକ ସ୍ଥାନ ପରେ ନିମିତ୍ତ ଅର୍ଦ୍ଧହସ୍ତ ପରିମିତ ଗର୍ତ୍ତ ଖନନ କରିବା, ଓ ବହିର୍ଗମନ ପରି ମୃତ୍ତିକା ଦ୍ୱାରା ଗାତ ପୂରଣ କରିବା ।

(୪)—ମନ୍ତ୍ର ପାଠ ପୂର୍ବକ ସ୍ନାନ ଓ ତର୍ପଣ କରିବା ।

(୫)—ତୁଳସୀ ପ୍ରଭୃତି ପ୍ରଦକ୍ଷିଣ କରିବା ଓ ପୂଜନ କରିବା ।

(୬)—ତିଳକ ଇତ୍ୟାଦି କରିବା ।
(୭)—ହୋମ ଓ ଦେବପୂଜା କରିବା ।
(୮)—ଅତିଥି ସେବା କରିବା ।
(୯)—ଗୋ ମେଷାଦିଙ୍କ ସେବା କରିବା ।
(୧୦)—ବେଦପାଠ ଓ ବ୍ୟାଖ୍ୟାନ କରିବା ।

ଆଜି ଆଧୁନିକ ଯୁଗର ଜନ ସମାଜରେ ଶ୍ରୀମାନ୍ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଦୈନନ୍ଦିନ କାର୍ଯ୍ୟ ନିର୍ଘଣ୍ଟ ପାଠକଲେ, ତାହା ଅବିକଳ ବାତୁଳର କାର୍ଯ୍ୟ ବ୍ୟତୀତ ଅନ୍ୟ କିଛି ପ୍ରତୀୟମାନ ହେବ ନାହିଁ । ଏହା ମଧ୍ୟରେ ଧର୍ମ, ଅର୍ଥ, କାମ, ମୋକ୍ଷ, ଏହି ଚତୁର୍ବର୍ଗ ଫଳ ନିହିତ ଅଛି । ମହାପୁରୁଷ ଭଗବାନଙ୍କର ଅଂଶାଂଶାଂଶ ମାତ୍ର, ସେ ନିଶ୍ଚୟ ଏକେଶ୍ୱରବାଦୀ ହୋଇଥିବେ, ତେବେ ଜନ ସମାଜକୁ ଶୃଙ୍ଖଳାବଦ୍ଧ ଭାବେ ଚଳାଇବା ଉଦ୍ଦେଶ୍ୟରେ ଏହି ସଂଯମ ପଥ ଦେଖାଇ ପାରିଥାନ୍ତି । ମନୁଷ୍ୟ କର୍ମ ଭୂମିରେ କର୍ମ ନ କଲେ, ଆଉ କର୍ମ କରିବ କେଉଁଠି ? ଭଗବାନ ସର୍ବ ବ୍ୟାପକ ହୋଇଥିବା ହେତୁ, ତାହାଙ୍କୁ ଯେଉଁ ସ୍ଥାନେ, ଯେତେବେଳେ, ଯେଉଁ ରୂପରେ ପୂଜା କଲେ ମଧ୍ୟ ସେ ତାହା ଗ୍ରହଣ କରନ୍ତି ।

ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଏତାଦୃଶ ଈଶ୍ୱରଭକ୍ତି ଅବଲୋକନ କରି ତାହାଙ୍କ ପିତା ଅତୀବ ଚଳିତ ହେଲେ । ପତିପରାୟଣା ପରମ ଧାର୍ମିକା ମାତା ପଦ୍ମାବତୀ ପୁତ୍ରର ବୈରାଗ୍ୟ ସନ୍ଦର୍ଶନରେ ସେପରି ଆଦୌ ଦୁଃଖିତା ହେଲେ ନାହିଁ । ବରଂ ମନେ ମନେ ଗର୍ବ ଅନୁଭବ କରିବାକୁ ଲାଗିଲେ । ପୁତ୍ର ଯେ ସତ୍ୟର ସନ୍ଧାନ ନିମିତ୍ତ ନିରନ୍ତର ବ୍ୟାକୁଳ; ନିସ୍ୱତ ମୁକ୍ତି ପଥର ସାଧକ, ଅମୂଲ୍ୟ ପ୍ରେମ-ରତ୍ନ ଆଶାରେ ପ୍ରଧାବିତ, ଏହା ଦେଖି ତାହାଙ୍କର ଆନନ୍ଦ ଶତ ଗୁଣ ବୃଦ୍ଧି ପ୍ରାପ୍ତ ହେଲା । ସେ ପୁତ୍ରକୁ ମନେ ମନେ ପ୍ରଶଂସା

ନ କରି ରହି ପାରିଲେ ନାହିଁ । କେବଳ ସେତିକି ନୁହେ—ନିଜର ସ୍ୱାମୀଙ୍କୁ ପୁନର ପଥରୋଧ ନ କରିବାକୁ ବାରମ୍ବାର ଅନୁରୋଧ କଲେ ।

ମହାପୁରୁଷ ଅଚ୍ୟୁତାନନ୍ଦ ଗୁରୁ ବ୍ରହ୍ମଙ୍କ ପ୍ରତି ଅଚଳ ବିଶ୍ୱାସ ସ୍ଥାପନ କରି, ସର୍ବଦା ଗୁରୁ ରୂପ ପରଂବ୍ରହ୍ମ ପ୍ରାପ୍ତ ହେବାକୁ ଏକ-ମନ ଏକ ଧ୍ୟାନରେ ତ୍ରିପୁର ପାଟଣା କୂଳ ପଶ୍ଚିମ ବଟ ବୃକ୍ଷମୂଳରେ ପଦ୍ମାସନରେ ଆସୀନ ହୋଇ ଗୁରୁ ପଦ ପଙ୍କଜରେ ଲୟ ଲଗାଇ ଥାନ୍ତି, ପର୍ଯ୍ୟାୟକ୍ରମେ ଦିନ ଦିନ ମାସ ମାସ ବର୍ଷ ବର୍ଷ ବିତିଗଲା ଅଚ୍ୟୁତାନନ୍ଦଙ୍କର ପ୍ରଗାଢ଼ ଲୟରେ ଭଗବାନ ସନ୍ତୁଷ୍ଟ ହୋଇ ସ୍ୱୟଂ ଅଭିନବ ବେଶରେ ଶଙ୍ଖ-ଚକ୍ର-ଗଦା-ପଦ୍ମ ଧାରଣ ପୂର୍ବକ ଆବିର୍ଭାବ ହୋଇ ଗମ୍ଭୀର ସ୍ୱରରେ କହିଲେ—"ବତ୍ସ ! ତୁମ୍ଭେ ଆମ୍ଭଙ୍କୁ ସ୍ମରଣ କରିବାର କୌଣସି କାରଣ ନାହିଁ । ମୋହାନ୍ଧ ମାନବଙ୍କୁ ସତ୍ୟ ଓ ମୁକ୍ତିର ପଥ ଦେଖାଇବା ପାଇଁ ଆମ୍ଭେ ତୁମ୍ଭଙ୍କୁ ଜଗତକୁ ପ୍ରେରଣ କରିଅଛୁ । ଆମ୍ଭ ଅଭିଷ୍ଟ ସିଦ୍ଧି ଉଦ୍ଦେଶ୍ୟରେ ତୁମ୍ଭର ଜନ୍ମ । ତାହା ତୁମ୍ଭେ ଶୀଘ୍ର ପୂରଣ କର । ଅଯଥା କାଳ କ୍ଷେପ କରି ଉଚିତ ନୁହେଁ । ତୁମ୍ଭେ ଯେଉଁ ଗୁରୁବ୍ରହ୍ମଙ୍କୁ ସ୍ମରଣ କରୁଅଛ, ସେହି ଗୁରୁବ୍ରହ୍ମ ଆମ୍ଭେ ଅଟୁ ।" ଭଗବାନ, ଅଚ୍ୟୁତଙ୍କୁ ସ୍ୱର୍ଗୀୟ ଅମୀୟ ବାଣୀ ଶୁଣାଇ ପଲକ ମାତ୍ରେ ଅନ୍ତର୍ଦ୍ଧାନ ହେଲେ ।



## ଷଷ୍ଠ ପରିଚ୍ଛେଦ

### ଛିନ୍ନବନ୍ଧନ

ବାସ୍ତବିକ, ଜଗତ ଯେପରି ପରିବର୍ତ୍ତନଶୀଳ, ମାନବର ମନ ସେହିପରି ପରିବର୍ତ୍ତନୀୟ ଅଟେ, ଲୌହକାର ଯେପରି ଉତ୍ତପ୍ତ ବନ୍ଧୁର ଲୌହ ଖଣ୍ଡକୁ ହାତୁଡ଼ି ଦ୍ୱାରା ବାରମ୍ବାର ଆଘାତରେ,

ସୁଦନ ତିକ୍ଷଣ ସୁତୀକ୍ଷ୍ଣ ଅସ୍ତ୍ରରେ ପରିଣତି, କରେ, ସେହିପରି ମୋହାନ୍ଧ ମାନବର ଦୁର୍ଦ୍ଦାନ୍ତ ମନକୁ ସଦୁବାକ୍ୟ ପ୍ରହାର ଦ୍ୱାରା ନିର୍ମଳ ପଥକୁ ଅନନ୍ୟୁନକରିବା, କେବଳ ମହା-ପୁରୁଷଗଣଙ୍କ ଦ୍ୱାରା ସମ୍ଭବପର ଅଟେ ।

ଅଦ୍ୟାପି ନିଜ ପିତାମାତା ଓ ସହଧର୍ମିଣୀ ସହ ଏକ ବାସରେ ରହିଥିବା ହେତୁ ପ୍ରଚାର କାର୍ଯ୍ୟର ସୁଗମ ପଥକୁ ପାରି-ବାରିକ ଧନ୍ଦା ଅବରୋଧ କରିବାକୁ ପଶ୍ଚାତ୍‌ପଦ ହେଉ ନ ଥିଲା । ଆଜି ମଧ୍ୟ ଭଗବତ୍ ଅନ୍ୱେଷୀ ପ୍ରିୟ ଶିଷ୍ୟ ବୃନ୍ଦ ପୂଜୋପକରଣ ବାହାନାରେ ଜୀବନୋପଜୀବକ ସ୍ୱରୂପ ଧନ ରତ୍ନାଦି ମହାପୁରୁଷଙ୍କ ହସ୍ତରେ ଅର୍ପଣ କରି ନ ପାରି, ତଦୀୟ ବାସ ଭବନରେ ପିତା ମାତା ଓ ପତି ପରାୟଣା ସ୍ତ୍ରୀଙ୍କ ନିକଟରେ ଅର୍ପଣ କରିବାକୁ ଚେଷ୍ଟିତ ହେଉଥିଲେ । ଏହି ସମସ୍ତ ଘଟଣା ଅବଲୋକନ କରି ମହାପୁରୁଷଙ୍କ କୋମଳ ପ୍ରାଣରେ ବିଶେଷ ଭାବେ କଷ୍ଟର ଅନୁଭୂତ ହେଲା । ସେ ବିଚକ୍ଷଣ ପୁରୁଷ, ଅଶେଷ ପାରଦର୍ଶିତା ବଳେ ସ୍ଥିର କଲେ ସଂସାରରୂପେ ଜୀବନ ଯାପନ କରି, ନିଜକୁ ଆଧ୍ୟାତ୍ମିକ ପଥେ ପଥିକ କରାଇ ସତ୍ୟଧର୍ମର ପ୍ରଚାର ଓ ପ୍ରସାର କରିବା ବଡ଼ ଦୁରୂହ କାର୍ଯ୍ୟ । ଦୀର୍ଘ ପାରିବାରିକ ସୁଖ ରଜ୍ଜୁ ମନୁଷ୍ୟର ହସ୍ତ ପଦ ଆପେ ଆପେ ବନ୍ଧନ କରି ନାନାଦି ଅନ୍ୟାୟ ପଥରେ ପଥିକ କରାଇବାକୁ ବରାବର ବଦ୍ଧ ପରିକର ।

ଇନ୍ଦ୍ରିୟ ପରାୟଣ ହୋଇ ପରୋପକାର ବ୍ରତ ପାଳନ କରା ଅତୀବ କଠିନ । ବିଷୟ ରସରେ ନିଜକୁ ନିମଗ୍ନ ରଖି ବିଭିନ୍ନ ପ୍ରକାରର ସାମୟିକ କର୍ମ ସଙ୍ଗେ ଅନ୍ୟାନ୍ୟ ଚିନ୍ତା ବରଣି ସଦୃଶ ହୋଇ ଶରୀରର ଘୋର ଅନିଷ୍ଟ ସାଧନ କରିବେ । ଯେପରି କି କୌଣସି ଗୋଟିଏ ବୃକ୍ଷ ଆବରଣଭ୍ୟନ୍ତରେ ରଖାଗଲେ, ତାହାର ପ୍ରାକୃତିକ ବିକାଶ ପ୍ରାପ୍ତ ନ ହୋଇ ପାରି ଆପେ ଅପେ

ର୍ବନାଶ ପ୍ରାପ୍ତ ଦଶକୁ ଅଗ୍ରସର ହୁଏ, ସେହିପରି ମାନବ ବିଷୟାସକ୍ତ ହେଲେ ତାହାର ବିକାଶ ଦୂରେ ଥାଉ, ମନୁଷ୍ୟତ୍ୱ ହ୍ରାସ ହେବାକୁ ବସେ । ପରିବାରସ୍ଥ ସମସ୍ତ ଶ୍ରେଣୀସ୍ଥ ଲୋକମାନଙ୍କ ଦୃଷ୍ଟି ଲକ୍ଷ ସମାନ ଦିଗକୁ ନ ଥାଏ ବୋଲି ପ୍ରତ୍ୟେକଙ୍କର କର୍ମରେ ପ୍ରତ୍ୟେକଙ୍କର ବିରୁଦ୍ଧଭାବ ଦେଖିବାକୁ ମିଳେ, ମାନବର ବିଷୟ କାମନା ମୁକ୍ତ ବା ନିର୍ବାଣ ପଦକୁ ଲଭିଇ ହୋଇ ବୈଷୟିକ ରସାସ୍ୱାଦନକୁ ଆଶା ବରାବର ପ୍ରଧାବିତ କରାଏ । ସେ ବନ୍ଧନ ଛିନ୍ନ କରିବା ନିମିତ୍ତ ଅନେକ ଦିନରୁ ହୃଦୟରେ ଆଶା ପୋଷଣ କରିଥିଲେ । ବର୍ତ୍ତମାନ ସେ ବନ୍ଧନ ଛିନ୍ନ କଲେ କୌଣସି ଦୋଷାଦୋଷରେ ଭାଗୀ ହେବେ ନାହିଁ; କାରଣ, ତାହାଙ୍କ ପୂର୍ବାଶ୍ରମ ପିତା ମହୋଦୟ ଆଉ ଦୁଇଟି ପୁତ୍ର ଓ ଗୋଟିଏ କନ୍ୟା ପ୍ରାପ୍ତ ହୋଇଛନ୍ତି । ତାହାଙ୍କର ମଧ୍ୟ ଗୋଟିଏ ନବଜାତ ସନ୍ତାନ । ସ୍ୱୀୟ ସ୍ତ୍ରୀ ସନ୍ୟାସିନୀ ବ୍ରତ ଅବଲମ୍ବନ କରିବାକୁ ଦୃଢ଼ ପରିକର ।

"ପୁତ୍ର ନିବେଶି ପତ୍ନୀ ପାଶେ,
ଆପଣେ ଚଳିବ ସନ୍ୟାସେ ।"

ମହାପୁରୁଷ ଅଚ୍ୟୁତାନନ୍ଦ ବନ୍ଧନ ଛିନ୍ନ କରିବାକୁ ଏତେଦିନ ପରେ ସୁଯୋଗ ପାଇ ଆପଣାକୁ ଧନ୍ୟ ମନେ କରିବା ସଙ୍ଗେ ସଙ୍ଗେ, ଶାନ୍ତି ଲାଭ ନିମିତ୍ତ ପରମାତ୍ମା ପରମେଶ୍ୱରଙ୍କୁ ପ୍ରାର୍ଥନା କଲେ । ସେହି ପଶ୍ଚିମ ବଟଗ୍ରାମ ଥିଲା, ତାହାଙ୍କର ବର୍ତ୍ତମାନ ପ୍ରଧାନ ଆଶ୍ରୟ ଓ ପ୍ରିୟ ସ୍ଥାନ ହେଲା ।

---

## ସପ୍ତମ ପରିଚ୍ଛେଦ ।

### ପ୍ରକୃତିର ଅଦ୍ଭୁତ ମହାତ୍ମ୍ୟ ।

ସୂର୍ଯ୍ୟନାରାୟଣ ସ୍ୱୀୟ ବିମାନ ପର ଅଧୀନ ହୋଇ ଆକାଶ ପ୍ରଦେଶର ବିହରଣ ଆରମ୍ଭ ମାତ୍ରେ, ଘୋର ତମସାଚ୍ଛନ୍ନ ତମିସ୍ରା

ଯେପରି ମୁହୂର୍ତ୍ତେ ମାତ୍ର କାଳକ୍ଷେପ କରିବାକୁ ଅବସର ପ୍ରାପ୍ତ ହୁଏ ନାହିଁ, ଓ ମହା-ଜଗତ ନିବଡ଼-ଅରଣ୍ୟାଭ୍ୟନ୍ତରରେ ଥିବା କ୍ଷୁଦ୍ର ବଳଧର ସମ୍ପୂର୍ଣ୍ଣ ଉଜ୍ଜ୍ୱଳ ହୁଏ, ଏବଂ ସେହି ତେଜରଶ୍ମି ପ୍ରକାଶିତ ହେବା-କ୍ଷଣି ଯେପରି ଚୌର ଓ ସଂସାରର ଘୋର ଅନିଷ୍ଟକାରୀ ମାଂସାଶୀ ପଶୁ ପ୍ରଭୃତି ସ୍ୱଇଚ୍ଛା ବଶତଃ ଲୋକ ଲୋଚନାଭ୍ୟନ୍ତରେ ଲୁକାୟିତରେ ନିଷ୍ଫଳ ନିମ୍ପନ୍ନ ଭାବେ, କାହିଁ ପର୍ବତ, ଗହ୍ୱର ବା ବିଶାଳ ବୃକ୍ଷ-କୋଟରେ କାତରରେ ହୃଦୟେ ଆଶ୍ରୟ ଗ୍ରହଣ କରନ୍ତି, ସେହିପରି ମହାକ-ମାନବ ତତ୍ତ୍ୱଜ୍ଞାନ ପ୍ରାପ୍ତ ହେଲେ ହୃଦୟ ପବିତ୍ର ହେବା ସଙ୍ଗେ ସଙ୍ଗେ, ହିଂସା, ଦ୍ୱେଷ, ଲୋଭ, ମୋହ ପ୍ରଭୃତି ଆପେ ଆପେ ଦୂରୀଭୂତ ହୋଇ, ମହା ଦୀପ୍ତିମନ୍ତ ମାନବ ରୂପେ ଜଗତରେ ଶୋଭା ପାଏ ଓ ନିର୍ବାଣ ପଦର ଅଧିକାରୀ ହୁଏ ।

ଏହି ତତ୍ତ୍ୱଜ୍ଞାନ ଅତୀବ ନିଗୂଢ଼, ମହାପୁରୁଷଗଣ ଜୀବନର ପ୍ରାରମ୍ଭରୁ ଯୋଗ ସାଧନ ଦ୍ୱାରା ତତ୍ତ୍ୱଜ୍ଞାନ ଲାଭରେ ପ୍ରୟାସୀ ହୋଇଥାନ୍ତି ।

କଠୋର ତପସ୍ୟା ଦ୍ୱାରା ଯେଉଁ ତତ୍ତ୍ୱଜ୍ଞାନ ଲାଭ କରିଥାନ୍ତି, ତାହା ଜନ ସମାଜରେ ପ୍ରଚାର କରିବା ହିଁ ତାହାଙ୍କର ପ୍ରଧାନ କର୍ତ୍ତବ୍ୟ । ମାୟା ପୂର୍ଣ୍ଣ ସଂସାରରେ ପଥହରା ମାନବଗଣ ଅନ୍ଧ ହୋଇ ଇତଃସ୍ତତ ଧାବିତ ହେଉଥାନ୍ତି । ଯେତେବେଳେ କୌଣସି ମହାପୁରୁଷଙ୍କ ତତ୍ତ୍ୱଜ୍ଞାନ ଲାଭ ବିଷୟ ଅବଗତ ହୁଅନ୍ତି, ସେତେ-ବେଳେ ଭ୍ରମର ମଧୁ ପାନ ଆଶାରେ ମତ୍ତ ହୋଇ ଧାବିତ ହେଲା ପରି ପ୍ରଧାବିତ ହୁଅନ୍ତି । ମଧୁପ ମଧୁପାନାନ୍ତର ଯେପରି ଆନନ୍ଦ ଅନୁଭବ କରେ, ସେହିପରି ମାନବଗଣ ନାମାମୃତ ପାନ କରି ନିଜର ଜୀବନକୁ ଧନ୍ୟ ମନେ କରନ୍ତି ।

ମହାପୁରୁଷ ଅଚ୍ୟୁତାନନ୍ଦ ବହୁଦିନ ଯୋଗ ସାଧନ କରି ଯେଉଁ ତତ୍ତ୍ୱଜ୍ଞାନ ଲାଭ କରିଥିଲେ ତାହା ସେହି ସମୟର ଜନ

ସମାଜରେ ପ୍ରଚାର କରିବାକୁ ଲାଗିଲେ । ମହା ପୁରୁଷଙ୍କର ଜଟିଳ ବିଷୟର ମୀମାଂସା, ଗୂଢ଼ ତତ୍ତ୍ୱର ବିଚାର, ଭାଗବତ ପ୍ରେମର ବ୍ୟାଖ୍ୟା ଶ୍ରବଣ କରିବା ପାଇଁ ସର୍ବଦା ଲୋକେ ବ୍ୟାକୁଳ ହୋଇ ତାହାଙ୍କୁ ଆଶ୍ରୟ କରୁଥିଲେ । ଯେ ଯେପରି ଭାବେ ଇଚ୍ଛା କରୁଥିଲା, ମହାପୁରୁଷ ତାହାକୁ ସେହିପରି ଭାବ ବୁଝାଇ ଦେଉଥିଲେ । ମୁହୂର୍ତ୍ତିକ ପାଇଁ ସେ କାହାରି ଉପରେ ବିରକ୍ତି ପ୍ରକାଶ କରୁ ନ ଥିଲେ, ବା କେବେହେଁ ତାହାଙ୍କ ଧୈର୍ଯ୍ୟଚ୍ୟୁତ ହେଉ ନ ଥିଲା ।

ମହାପୁରୁଷଗଣ ଜୀବିତ ଅବସ୍ଥାରେ ଯେପରି ଶିକ୍ଷା ପ୍ରଦାନ କରନ୍ତି, ଭବିଷ୍ୟତ୍ ପ୍ରଚାର ପାଇଁ ମଧ୍ୟ ଉପଯୁକ୍ତ ଶିଷ୍ୟ ଓ ଉପଦେଶପୂର୍ଣ୍ଣ ଗ୍ରନ୍ଥ ପ୍ରସ୍ତୁତ କରି ରଖି ଯାଆନ୍ତି ।

ଶ୍ରୀଯୁକ୍ତ ରାମଚନ୍ଦ୍ର ଉପଯୁକ୍ତ ଗୁରୁଙ୍କର ଉପଯୁକ୍ତ ଶିଷ୍ୟ ଥିଲେ । ସେ ମହାପୁରୁଷଙ୍କ ନିକଟରେ ଅଧିକାଂଶ ସମୟ କଟାଇ ଓ ମହାପୁରୁଷଙ୍କ ଠାରୁ ସଦ୍ ଉପଦେଶାବଳୀ ଶୁଣି, ତାହାଙ୍କର ମନ ସ୍ୱତଃ ପ୍ରବୃତ୍ତ ହୋଇ ନ୍ୟାୟ ପଥ ଅନୁସରଣ କଲା । ସେ କର୍ତ୍ତବ୍ୟ ନିଷ୍ଠ ଓ ସତ୍ୟ ପରାୟଣ ହେଲେ । ଶିଷ୍ୟ ରାମଚନ୍ଦ୍ର ଜଣେ କୃଷି ଜୀବୀ, ତାହାଙ୍କର ସ୍ୱଭାବ ଅତୀବ ସରଳ, ସେ ମୁହୂର୍ତ୍ତେ ସୀନ୍ଧ ଅଯଥା କାଳ କ୍ଷେପ କରନ୍ତି ନାହିଁ । ସେ ସର୍ବଦା ପରଦୁଃଖ ମୋଚନ ନିମନ୍ତେ ତତ୍ପର ।

ଶ୍ରୀଯୁକ୍ତ ରାମଚନ୍ଦ୍ରଙ୍କର ଜନୈକ ପ୍ରତିବେଶୀ ମହାଡମ୍ବରରେ ରହି ଅସଦ୍ ବ୍ୟବହାରରେ ବହୁ ଧନ ଅର୍ଜ୍ଜନ କରି, ଧନ ବଳରେ ମାନୀ ହୋଇ ଦନାଡପାଡ କରୁଥାନ୍ତି । ସେ ନିରୀହ ଲୋକମାନଙ୍କ ସର୍ବସ୍ୱ ହରଣ କରିବାକୁ କଦାପି କୁଣ୍ଠା ବୋଧ କରନ୍ତି ନାହିଁ । ସେ ନିଜର ଇନ୍ଦ୍ରିୟ ଲାଳସା ପରିତୃପ୍ତି ଆଶାରେ ନିର୍ଦ୍ଦୋଷୀ ଜୀବମାନଙ୍କୁ ବରାବର ବଧ କରିବାକୁ ପ୍ରସ୍ତୁତ ହୋଇ ଶତ ଶତ ଜୀବ ବଧ କରନ୍ତି । ଦାସ ଦାସୀରେ ତାହାଙ୍କର

ଉତ୍ସ ପରିପୂର୍ଣ୍ଣ, କିନ୍ତୁ ସେମାନେ ତାହାଙ୍କ ଦ୍ୱାରା କେବେହେଁ ପ୍ରଶଂସିତ ହୋଇ ପାରନ୍ତି ନାହିଁ । ସେମାନେ ତାଙ୍କ ବାଦ ନ୍ୟାୟ ବହୁ ତାଡ଼ନା ଅକାତରେ ସହ୍ୟ କରି ଦିନପାତ କରୁ ଥାନ୍ତି ।

ପୂଜା, ଉପାସନା, ପ୍ରାର୍ଥନା ଏ ସମସ୍ତ ତାହାଙ୍କ ଚକ୍ଷୁରେ କୁସଂସ୍କାର ପୂର୍ଣ୍ଣ ନିରର୍ଥକ ବିଷୟ ରୂପେ ପ୍ରତିଭାତ ହେଉଥିଲା । ଅହଂକାର ତାହାଙ୍କର ମନକୁ ସମ୍ପୂର୍ଣ୍ଣ ରୂପେ ଅଧିକାର କରି ପାରିଥିଲେ । ତାହାଙ୍କର ଅତିଥି ସେବା ଦୂରେ ଥାଉ, ନିଜର ପରିବାର ବର୍ଗଙ୍କ ପାନାହାର ନିମିତ୍ତ ସେ ଅଦୌ ସୁବନ୍ଦୋବସ୍ତ କରୁ ନ ଥିଲେ । ସେ କେବଳ ନିଜ ଖାଦ୍ୟ ପେୟ ପ୍ରତି ବିଶେଷ ଦୃଷ୍ଟି ଦିଅନ୍ତି । ସମୟେ ସମୟେ କହନ୍ତି କହୋ । ମନୁଷ୍ୟତ୍ୱ ଜନ୍ମ ହୋଇଛି, ମୃତ୍ୟୁ ବି ହେବ, ମୋହର ପିତାମାତା ଯେପରି ଧନ ଅର୍ଜ୍ଜନ କରି ମୋ ନିମନ୍ତେ ସମ୍ପାଦନ କରି ଯାଇଥିଲେ, ମୁଁ ତାଦୃଶ ଧନ ସତ୍ ଉପାୟ ବା ଅସତ୍ ଉପାୟ ଦ୍ୱାରା ଉପାର୍ଜ୍ଜନ କରିବା ମୋର କର୍ତ୍ତବ୍ୟ । ମାନବ ଆଜୀବନ ସୁଖ ସ୍ୱଚ୍ଛନ୍ଦରେ ଚଳିଲେ ଭଲ ।

ସେ ଉଦାସୀ ପ୍ରତିବେଶୀ ଭକ୍ତପ୍ରାଣ ରାମଚନ୍ଦ୍ରଙ୍କର ପରୋପକାରବ୍ରତ, ଉପାସନାକୁ ଲକ୍ଷକରି ବ୍ୟଙ୍ଗୋକ୍ତିରେ କହନ୍ତି,—"ବ୍ରତ କ'ଣ ? ପୂଜା କ'ଣ ? ଏ ସମସ୍ତ ବା ହେବ କଣ ? ଜ୍ୱଳନ୍ତାଗ୍ନି ନିର୍ବାପିତାର୍ଥେ ଅନ୍ୟନ୍ୟ ଜଳ ନିକ୍ଷେପ କର । ଯେପରି ଜନ୍ମାନ୍ତରେ ପ୍ରାପ୍ତ ହେବାର ଆଶା ରଖି ଦାନ କରିବା ସେହିପରି ମାତ୍ର । ଇହ ଜନ୍ମରେ ମାନବ ଯେଉଁ ସୁଖ ପ୍ରାପ୍ତ ହେବ, ତାହାହିଁ ପ୍ରଧାନ ସୁଖ । ପରଜନ୍ମ ବା କ'ଣ ? ମନୁଷ୍ୟ ମଲେ ଗଲା, ପତ୍ର ବୃକ୍ଷରୁ ଝଡ଼ି ପଡ଼ିଲେ ଆଉ ଯେପରି ଲାଗିପାରେ ନାହିଁ, ସେହି ପରି ମନୁଷ୍ୟ ମଲେ ଆଉ ମନୁଷ୍ୟ ହେବାର ନାହିଁ କଏ, କେଉଁଠାରେ ଦେଖିଛି ?"

ଶ୍ରୀଯୁକ୍ତ ରାମଚନ୍ଦ୍ରଙ୍କୁ ଏହି କଥା ବଡ଼ ବାଧିଲା । ତାହାଙ୍କର ସରଳ ପ୍ରାଣରେ ସନ୍ଦେହର ମାତ୍ରା ବୃଦ୍ଧି ହେବାକୁ ଲାଗିଲା । ଏହି ସନ୍ଦେହ କିପରି ଅପନୋଦନ ହେବ, ସେଥିପାଇଁ ତାହାଙ୍କର ଚିତ୍ତ ବାରମ୍ବାର ଆନ୍ଦୋଳିତ ହେଉଥାଏ । ସେ ମହାପୁରୁଷଙ୍କ ଆଶ୍ରମରେ ପ୍ରବେଶ ହୋଇ ମହାପୁରୁଷଙ୍କୁ ସାଷ୍ଟାଙ୍ଗେ ପ୍ରଣିପାତ କରି ପଦରଜ ଗ୍ରହଣ କଲେ ଓ ମହାପୁରୁଷଙ୍କ ଇଙ୍ଗିତରେ ରାମଚନ୍ଦ୍ର ଉପବିଷ୍ଟ ହେଲେ । ମାତ୍ର ତାହାଙ୍କ ମନ ପ୍ରେତବେଣୀର ବ୍ୟଙ୍ଗୋକ୍ତି ପ୍ରତି ଆନ୍ଦୋଳିତ ହେଉ ଥାଏ । ହେଲେ ବା କରିବେ କ'ଣ ? ଏହି ପ୍ରଶ୍ନଟି ମହାପୁରୁଷଙ୍କ ନିକଟରେ ଉତ୍ଥାପନ କରିବାକୁ ଆଦୌ ସାହାସ ହେଲା ନାହିଁ । ସେ ସ୍ୱତଃ ଭାବୁଥାନ୍ତି, ଯେ ତ୍ରିକାଳ ଦର୍ଶୀ, ଯାହାଙ୍କୁ ସଂସାରର ସମସ୍ତ ବିଷୟ ଜଣା, ମୁଁ ପାପୀ, ନରାଧମ, କାହିଁକି ବା ଏପରି ପ୍ରଶ୍ନ ଉତ୍ଥାପନ କରିବି ?

ଭକ୍ତ ବତ୍ସଳ ମହାପୁରୁଷ, ଭକ୍ତର ମନୋଭାବ ଜାଣି, ତାହା ପୂରଣ କରିବାକୁ ସ୍ନେହ-ପୂର୍ଣ୍ଣ ଗମ୍ଭୀର ସ୍ୱରରେ କହିବାକୁ ଲାଗିଲେ—ବତ୍ସ ! ବର୍ତ୍ତମାନ ତୁମ୍ଭେ ଯାହା ଜାଣିବା ନିମିତ୍ତ ମନରେ ବ୍ୟାକୁଳ ହୋଇ ଆଶ୍ରମକୁ ଆସିଅଛ, ତାହା ମୁଁ ଜାଣି ପାରୁଛି । ତ୍ରିକାଳଦର୍ଶୀ ସିଦ୍ଧ ମହାପୁରୁଷଗଣ ବହୁକାଳ କଠୋର ତପସ୍ୟା ଦ୍ୱାରା ଯାହା ସତ୍ୟ ବୋଲି ପ୍ରମାଣ କରି ଯାଇଛନ୍ତି, ସେଥିରେ ତୁମ୍ଭର ସନ୍ଦେହ ଜାତ ହେବାର କାରଣ କଅଣ ? ସେମାନଙ୍କ ସିଦ୍ଧାନ୍ତ କଦାପି ମିଥ୍ୟା ହେବ ନାହିଁ । ଅତ—

ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି:—

"ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋଽପରାଣି
ତଥା ଶରୀରାଣି ବିହାୟ ଜୀର୍ଣ୍ଣା
ନ୍ୟନ୍ୟାନି ସଂଯାତି ନବାନି ଦେହୀ ।

ଜୀବ ମାତ୍ରକେ ନିଜର କାର୍ଯ୍ୟାନୁସାରରେ ସୁଖ, ଦୁଃଖ ଭୋଗ କରିବା ପାଇଁ ଜନ୍ମାନ୍ତର ଗ୍ରହଣ କରିବାକୁ ବାଧ୍ୟ ହୋଇ ଥାଆନ୍ତି । ଯଦି ପ୍ରତ୍ୟେକ ମାନବ ସାମାନ୍ୟ ଶକ୍ତିବଳରେ, ତେବେ ତାହାର ପୂର୍ବ ଜନ୍ମ, ବର୍ତ୍ତମାନ ଜନ୍ମ ଓ ଭବିଷ୍ୟତ ଜନ୍ମର ତତ୍ତ୍ୱ ଅନାୟାସରେ ଜାଣି ପାରିବ । କିନ୍ତୁ ଦୁଃଖର ବିଷୟ ମନୁଷ୍ୟ ନିଜର ଜନ୍ମ ଜନ୍ମାନ୍ତରର ରହସ୍ୟ ଅବଗତ ହେବା ନିମିତ୍ତ ଚେଷ୍ଟା କରେ ନାହିଁ । ତୁମ୍ଭର ଯେତେବେଳେ ଏହି ବିଷୟ ଜାଣିବାର ବିଶେଷ ଆଗ୍ରହ ଜାତ ହୋଇଅଛି, ମୁଁ ତାହା ତୁମ୍ଭଙ୍କୁ ପ୍ରମାଣ ଦ୍ୱାରା ଦେଖାଇ ଦେଉଅଛି । ଦେଖ, ମନୁଷ୍ୟ ଯେତେବେଳେ ପୁନଃ ଜନ୍ମ ଗ୍ରହଣ କରେ, ସେତେବେଳେ ସେ ଇହଜୀବନର ଜୀବାତ୍ମା ଓ ପରମାଣୁର ସମଷ୍ଟି ଦେହ ଜାତହୁଏ । ଏଣୁ, ଲୋକ ବିଭିନ୍ନ ଅବସ୍ଥା, ଅଦୃଷ୍ଟ ଓ କର୍ମଫଳର ଅଧୀନ ହୋଇ ନାନା-ପ୍ରକାର ସୁଖ ଦୁଃଖ ଭୋଗ କରିଥାନ୍ତି । ଯେପରି ଦର୍ପଣରେ ପ୍ରଶାନ୍ତ ମୁଖର ପ୍ରତିବିମ୍ବ ପ୍ରଶାନ୍ତ ମୂର୍ତ୍ତି ଧାରଣ କରେ ଓ ବିକଟ ମୁଖର ପ୍ରତିବିମ୍ବ ବିକଟାକାର ଦେଖାଯାଏ, ସେହିପରି ଲୋକେ ଇହ-ଜନ୍ମରେ ସରଳ ଓ ଧର୍ମପଥରେ ରହି ଅନ୍ୟାୟ କାର୍ଯ୍ୟ ନ କଲେ, ପରଜନ୍ମରେ ମଧ୍ୟ ସେହି ଅବସ୍ଥା ପ୍ରାପ୍ତ ହୁଅନ୍ତି । ଅନ୍ୟାୟ ବା ଅସତ କାର୍ଯ୍ୟ କରି ଅଧୋଗାମୀ ହେଲେ, ଆତ୍ମାର ମଧ୍ୟ ଅଧୋ-ଗତି ହୁଏ । ଯେ ଏ ଜନ୍ମରେ ଚୌର୍ଯ୍ୟବୃତ୍ତି ଅବଲମ୍ବନ କରି-ଅଛି, ସେ ପରଜନ୍ମରେ ନିଶ୍ଚୟ ଚୌର ହୋଇ ନୀଚ ଆସନପ୍ରାପ୍ତ ହେବ ଏବଂ ଯେ ଏ ଜନ୍ମରେ ଧର୍ମ କାର୍ଯ୍ୟ କରି ଧାର୍ମିକ ହୋଇଛି, ସେ ପରଜନ୍ମରେ ମଧ୍ୟ ଧାର୍ମିକ ହୋଇ ଉଚ୍ଚ ଆସନ ପ୍ରାପ୍ତ ହେବ । ପ୍ରତ୍ୟେକ ଜୀବ ଯେତେବେଳେ ପରମେଶ୍ୱରଙ୍କ ଦ୍ୱାରା ସୃଷ୍ଟ, ସେ ତାହାର ପ୍ରତି ପକ୍ଷପାତ ନୁହନ୍ତି । ଯେପରି ନିଜ ସନ୍ତାନ-ମାନଙ୍କ ପ୍ରତି ପିତା ମାତାଙ୍କର ସମଭାବରେ ବାତ୍ସଲ୍ୟ ଥାଏ ,

ପରମ ପିତା ଭଗବାନ୍ ମଧ୍ୟ ତାହାଙ୍କ ସୃଷ୍ଟିର ସମସ୍ତ ଜୀବପ୍ରତି ସମାନ ଦୃଷ୍ଟି ଓ ବାତ୍ସଲ୍ୟ ଦେଖାନ୍ତି । ପୁଣି ଯେପରି ସନ୍ତାନ ନିନ୍ଦନୀୟ ବା ଦୂଷଣୀୟ କର୍ମ କଲେ ପିତା ମାତାଙ୍କ ସ୍ନେହରୁ ସମୟେ ସମୟେ ବଞ୍ଚିତ ହୁଏ, ପରମେଶ୍ୱର ମଧ୍ୟ ସେହିପରି ଜୀବର ପାପାଚାର ଓ ଦୁଷ୍କର୍ମ ନିମନ୍ତେ, ତାହାକୁ କଷ୍ଟ ଦେଇଥାନ୍ତି । ମନୁଷ୍ୟ ଯଦି ଥରେ ମାତ୍ର ଜନ୍ମଗ୍ରହଣ କରନ୍ତା, ତେବେ ଜଣେ ରାଜା, ଜଣେ ପ୍ରଜା, ଜଣେ ଧନୀ, ଜଣେ ଦରିଦ୍ର, ଜଣେ ସୁଖୀ, ଜଣେ ଦୁଃଖୀ, ଜଣେ ରୋଗୀ, ଜଣେ ନିରୋଗୀ ହୁଅନ୍ତେ ନାହିଁ । କାରଣ, ଅନ୍ୟାୟ ନ କଲେ କାହାର ଶାସ୍ତି ବିଧାନ ହୁଏ ନାହିଁ । ଏ ଜୀବନରେ ଯେପରି ବିଦ୍ୟା, ବୁଦ୍ଧି ଓ ସ୍ୱଭାବ ନେଇ ସଂସାର ତ୍ୟାଗ କରେ; ପରଜନ୍ମରେ ସେହି ବିଦ୍ୟା, ବୁଦ୍ଧି ଓ ସ୍ୱଭାବ ନେଇ ଜନ୍ମଗ୍ରହଣ କରିଥାଏ ।

ମହାପୁରୁଷଙ୍କ ଶ୍ରୀମୁଖରୁ ଜୀବର ପରଜନ୍ମର ବୃତ୍ତାନ୍ତ ଶୁଣି ରାମଚନ୍ଦ୍ର କୃତ୍ୟ କୃତ୍ୟ ହେଲେ । ପୁନଃ ମହାପୁରୁଷ କହିଲେ— "ତୁମ୍ଭେ ପୂର୍ବ ଜନ୍ମରେ ଅମୁକ ଜାତିଥିଲ, ତୁମ୍ଭେ ଅମୁକ ନାମଧାରୀ ଅମୁକ ଗ୍ରାମରେ ଜଣେ ବିଖ୍ୟାତ ବ୍ୟବସାୟୀ, ତୁମ୍ଭର ପିତାଙ୍କ ନାମ ଅମୁକ ଓ ପୁତ୍ରର ନାମ ଅମୁକ ଥିଲା ।"

ଯଦି ଏ ସମସ୍ତ ଉକ୍ତି କଳ୍ପନା ସମ୍ଭୂତ ବୋଲି ମନେକର, ଯଦି ଏଥିରେ ତୁମ୍ଭର ବିଶ୍ୱାସ ନ ହୁଏ, ତେବେ ତୁମ୍ଭେ ସେ ସ୍ଥାନକୁ ପ୍ରସ୍ଥାନ କରି ସତ୍ୟାସତ୍ୟ ନିର୍ଣ୍ଣୟ କର, ଆଜି ମଧ୍ୟ ତୁମ୍ଭେ ଶିଳାଖଣ୍ଡ ଅଣାଇ ସାଧାରଣ ଉପକାରାର୍ଥେ ଗ୍ରାମର ନିକଟ ସ୍ଥାନରେ ଯେଉଁ କୂପ ଖନନ କରାଇ ଅଛ, ସେହି ପ୍ରସ୍ତରର ବାହ୍ୟ ପାର୍ଶ୍ୱରେ ତୁମ୍ଭର ନାମ ଲେଖାଯାଇ ଅଛି; ତାହା ବର୍ତ୍ତମାନ ମୃତ୍ତିକାଭ୍ୟନ୍ତରେ ଲୁକାୟିତ ଭାବେ ଅଛି । କୂପଟିର ପୂର୍ବଦିଗରୁ ତୁଇହାତ ପରିମିତ ମୃତ୍ତିକା ଖନନ କରାଇଲେ, ତାହା ତୁମ୍ଭେ ଅବଶ୍ୟ ଦେଖି ପାରିବ ।

ଶ୍ରୀଯୁକ୍ତ ରାମଚନ୍ଦ୍ର ଏ ସମସ୍ତ ବିଷୟ ଶ୍ରବଣ କରି ଚମତ୍କୃତ ହେଲେ । ଜନ୍ମାନ୍ତର ବାଦ ସମ୍ବନ୍ଧେ ତାହାଙ୍କର ଧାରଣା ଦୃଢ଼ିଭୂତ ହେଲା । ରାମଚନ୍ଦ୍ରଙ୍କର ଆନନ୍ଦର ସୀମା ରହିଲା ନାହିଁ । ଦିନା-ବସାନ ହେବାରୁ ରାମଚନ୍ଦ୍ର ପ୍ରଣିପାତ କରି ଚରଣ ଧୂଳି ଶିରରେ ବୋଳି ଗୃହାଭିମୁଖେ ପ୍ରସ୍ଥାନ କଲେ ।

ଧନ୍ୟ ମହାପୁରୁଷ, ଧନ୍ୟ ତୁମ୍ଭ ତପସ୍ୟାର ଫଳ, ଯୌଗିକ ଶକ୍ତି ଦ୍ୱାରା ଜଗତର କୌଣସି ବିଷୟ ତୁମ୍ଭଙ୍କୁ ଅବିଦିତ ନାହିଁ । ତୁମ୍ଭେ ସ୍ୱ ଉଦାରବଳେ ଅଜ୍ଞାନ ଅନ୍ଧକାରାଚ୍ଛନ୍ନ ମାନବ ପ୍ରାଣରେ ଯେଉଁ ଅପୂର୍ବ ଜ୍ଞାନାଲୋକ ଜାଳି ମହୋଜ୍ଜ୍ୱଳ କରିଅଛ, ତାହା ଅକ୍ଷୟ ଅକ୍ଷରେ କାଳ ବକ୍ଷରେ ଅଙ୍କିତ ହୋଇ ରହିବ ।

ତହିଁ ପରଦିବସ ରାମଚନ୍ଦ୍ର ଆଶ୍ରମାଭିମୁଖେ ପ୍ରସ୍ଥାନ କଲେ, ହୃଦୟରେ କେତେ ନୂଆ ନୂଆ ଭାବ ଖେଳୁଥାଏ । ଆଶ୍ରମରେ ପ୍ରବେଶ ହୋଇ ଦେଖିଲେ—ମହାପୁରୁଷ ସ୍ରୋତ-ସ୍ୱତୀ, ସ୍ୱଚ୍ଛ-ନୀର ଶିତୋପଳାରେ ସ୍ନାହାନ ତର୍ପଣ ଇତ୍ୟାଦି ଶେଷ କରି ଆଶ୍ରମର ଦେବ ପୂଜାରେ ମନ ନିବେଶ କରିଛନ୍ତି । ଅଳ୍ପ ସମୟ ପରେ ଦେବତାଙ୍କ ପୂଜା ଶେଷ ହେଲା । ଅଚ୍ୟୁତ ନିଜେ ପଦ୍ମାସନରେ ଆସୀନ ହୋଇ ଧ୍ୟାନମଗ୍ନ ହେଲେ, ରାମଚନ୍ଦ୍ରଙ୍କର ସନ୍ଦେହ ହୃଦ ହେଉଥିଲା ସନ୍ଦେହ ମୋଚନ ହୋଇ କିପରି ତତ୍ତ୍ୱଜ୍ଞାନ ଲାଭ କରିବ; ସେହି ପଥରେ ପଥିକ ହେବାକୁ ବସିଲା । ମହାପୁରୁଷଙ୍କର ଧ୍ୟାନ ଶେଷ ହେବାରୁ, ରାମଚନ୍ଦ୍ର, ମହାପୁରୁଷଙ୍କୁ ପ୍ରଣାମ କରି ଚରଣ ଧୂଳି ସ୍ପର୍ଶରେ ଜୀବନକୁ ପବିତ୍ର ମନେ କଲେ ।

ଠିକ ସେହି ସମୟରେ ଦଳେ ଲୋକ ଆସି ମହାପୁରୁଷଙ୍କ ଚରଣ ତଳେ ଗୋଟି ଗୋଟି ହୋଇ ଦଣ୍ଡବତ ପଡ଼ିଗଲେ । ସେମାନେ ଯେତେବେଳେ ଆସୁଥିଲେ, ସେମାନଙ୍କର ଗତି ଖୁବ୍ ଦ୍ରୁତ ଥିଲା । ସେମାନଙ୍କର ବଦନଶ୍ରୀକୁ ବିଷାଦ ରୂପ ରାହୁ ଗ୍ରାସ

କରିଥିଲା ପରି ବୋଧ ହେଉଥିଲା । ସେତେ କୃଷକମାନଙ୍କର ରକ୍ତ ଶୁଷ୍କ ପୂର୍ଣ୍ଣ ମାତ୍ରାରେ ଉତ୍ତେଜିତ ହୋଇଥିଲା । ବାୟୁଶୂନ୍ୟ ପରି- ମାଣ ଅତ୍ୟଧିକ ହେତୁ, ସେମାନଙ୍କ ମୁଖରୁ ଖଣ୍ଡବାକ୍ୟ ସୁଦ୍ଧା ଉଚ୍ଚାରଣ ହୋଇ ପାରୁ ନ ଥିଲା ।

ସେ ତ ମହାପୁରୁଷ, ତାହାଙ୍କୁ କି ଜଗତର କଥା ଅଜ୍ଞାତ ଅଛି ? ମହାପୁରୁଷ, ସେମାନଙ୍କ ହୃଦୟର ଗଭୀର ବେଦନା ଅବଗତ ହୋଇ ଶ୍ରୀମୁଖରୁ ଆଜ୍ଞା ହେଲା—ବତ୍ସଗଣ ! ଉଠ, ଦଣ୍ଡାୟମାନ ହୁଅ, ତୁମ୍ଭମାନଙ୍କ ଗନ୍ତବ୍ୟ ପଥରେ ତୁମ୍ଭେମାନେ ଗମନକର, ତୁମ୍ଭେମାନେ ଭୀତ ହେବାର କୌଣସି କାରଣ ନାହିଁ । ଭଗବାନ, ନିଶ୍ଚୟ ତୁମ୍ଭ ନିରୀହ ନିର୍ଦ୍ଦୋଷୀମାନଙ୍କ ପ୍ରତି ସଦୟ ହେବେ । ଶ୍ରୀଯୁକ୍ତ ଜମିଦାର ମହୋଦୟଙ୍କୁ ମଇଁଷି ସମ୍ବନ୍ଧ ବନ୍ଧନରୁ ଅବ୍ୟାହତି ପାଇବାକୁ ପ୍ରାର୍ଥନା କର । ନିମ୍ନ କର୍ମଚାରୀ- ମାନେ ଇକ୍ଷୁକ୍ଷେତ ନଷ୍ଟ କରିଥିବାର ଅଯଥା ଅଭିଯୋଗ କରି ନିରୀହ ପଶୁ ମଇଁଷି ଦଳକୁ ଆବଦ୍ଧ କରିଅଛନ୍ତି । ମହାନନ୍ଦେ ଗୋପାଳ ବୃନ୍ଦ ଜମିଦାର ମହୋଦୟଙ୍କ ଉଆସାଭିମୁଖେ ଗମନ କଲେ । ଗୋପାଳ ବୃନ୍ଦ କ୍ଷେତ୍ରର ଫସଲ ନଷ୍ଟ ନ ହୋଇଥିବା ବିଷୟ ଜମିଦାର ମହୋଦୟଙ୍କୁ ଜଣାଇଲେ । ଗୋପାଳମାନଙ୍କ ଅସାବଧାନତା ଦୋଷରୁ ଆଖୁ କ୍ଷେତ ଅସଂଖ୍ୟ ମଇଁଷି ଦ୍ୱାରା ନଷ୍ଟ ହୋଇଥିବା ବିଷୟ, ଜମିଦାର, ତାହାଙ୍କ ବିଶ୍ୱାସୀ ଭୃତ୍ୟଠାରୁ ଅବଗତ ହୋଇଥିଲେ । ଗୋପାଳବୃନ୍ଦଙ୍କ ଉକ୍ତି ଦ୍ୱାରା ପୂର୍ଣ୍ଣ ବିପରୀତ ବ୍ୟଞ୍ଜକ ଘଟଣା ଘଟିବାରୁ ସ୍ୱୟଂ ଜମିଦାର ମହୋଦୟ ଶିବିକାରୋହଣ ପୂର୍ବକ ଘଟଣା ସ୍ଥଳେ ଉପସ୍ଥିତ ହୋଇ ଇକ୍ଷୁକ୍ଷେତ ପରିଦର୍ଶନ କଲେ "କ୍ଷେତ ନଷ୍ଟ ହେବା ଦୂରେ ଥାଉ ପୂର୍ବାପେକ୍ଷା ଅଧିକ ସୁନ୍ଦର ହୋଇ ଥିବାର ତାହାଙ୍କର ନୟନ ଗୋଚର ହେଲା । ଗୋପାଳବୃନ୍ଦ ମହାନନ୍ଦେ ନିଜ ନିଜ ମଇଁଷି ଦଳ ନେଇ ପ୍ରସ୍ଥାନ କଲେ ।

ଏହି ଅଶ୍ଚର୍ଯ୍ୟ ଘଟଣାଟି ଯେ କେବଳ ମହାପୁରୁଷଙ୍କ କୃପାରୁ ଘଟିଲା, ଏହା ଜମିଦାର ମହୋଦୟ ସ୍ୱୟଂ ଅବଗତ ହୋଇ, ନିଜକୁ ମହାପୁରୁଷଙ୍କ ସେବାରେ ନିୟୋଜିତ କଲେ।

ଏହି ଅଲୌକିକ ଐଶୀଶକ୍ତି ଗୋପାଳବୃନ୍ଦ ସବାରେ ଭୋଗ କରିଥିବା ହେତୁ; ସେହି ଦିବସରୁ ନିଖିଳ ଉତ୍କଳ ଗୋପାଳମାନଙ୍କର ମୁକ୍ତିର ପଥ ପ୍ରଦର୍ଶକ ରୂପେ ସେହି ମହାପୁରୁଷଙ୍କ ପିଠସ୍ଥାନ—ନେମ୍ବାଳ। ସେହି ପିଠସ୍ଥାନର ଉତ୍ତୋରତ୍ତର ଉନ୍ନତି ନିମନ୍ତେ ଓ ଉଣଶାର୍ଥ ପ୍ରତ୍ୟେକ ଗୋପାଳ ପରିବାର ବାର୍ଷିକ ଶ୍ରଦ୍ଧା ହିସାବେ କିଛି କିଛି ଦିଅନ୍ତି ଓ ନେମ୍ବାଳ ନିଧିକୁ ସେମାନେ ବୃତ୍ତାନ୍ତ ନିବୃତ୍ତି ରୂପେ ଗ୍ରହଣ କରନ୍ତି। ମହାପୁରୁଷଙ୍କର ଅଦ୍ଭୁତ ମହାତ୍ମ୍ୟ ଲୋକ ମୁଖରେ ମୁଖରିତ ହୋଇ ଚତୁର୍ଦ୍ଦିଗ ବ୍ୟାପିଗଲା। ଉତ୍କଳର ପ୍ରତ୍ୟେକ ଶ୍ରେଣୀସ୍ଥ ଲୋକମାନେ ମୁକ୍ତି ଆଶାରେ ମହାପୁରୁଷଙ୍କ ଆଶ୍ରୟ ଗ୍ରହଣ କରିବାକୁ ଲାଗିଲେ।

ଯେଉଁ ସ୍ଥାନ ଭୟାବହ ନିର୍ଜନ ପ୍ରାନ୍ତର ରୂପେ ସ୍ରୋତସ୍ୱତୀ ଚିତ୍ରୋତ୍ପଳା ତଟରେ ମାଳିଦୁର୍ବାଳବୃତ ହୋଇ; ଚୀର ଶାନ୍ତି ପ୍ରଦାୟିନୀ ନିବିଡ଼ ଘନୀ-ଛାୟା-ବିଶିଷ୍ଟ ମହୀରୁହାଧିରାଜ ବଟଦ୍ରୁମଟି ସଗର୍ବେ ବକ୍ଷରେ ଧେନି ଯାହାଙ୍କ ଶରୀରରେ ନିର୍ଭୟ ମାନବକୁ ମୁହୂର୍ତ୍ତେ ସୁଦ୍ଧା ସ୍ଥାନ ନ ଦେଇ ଭୟରେ ବିହ୍ୱଳ କରାଉଥିଲା ଓ ପଶୁପକ୍ଷୀମାନଙ୍କ ମଧୁର ଧ୍ୱନିକୁ ମଧ୍ୟ ବିତାଡ଼ିତ କରାଇବାକୁ କୁଣ୍ଠା ବୋଧ କରୁ ନଥିଲା ସେହି ସ୍ଥାନ; ଆଜି ମହାପୁରୁଷ ଅଚ୍ୟୁତାନନ୍ଦ ପଦାର୍ପଣ କରିଥିବା ହେତୁ, ମହା ଗର୍ବରେ ଗର୍ବିତ ହୋଇ ଅଶେଷ ଲୋକଙ୍କୁ ଶାନ୍ତି ପ୍ରଦାନ ପୂର୍ବକ ବିବିଧ ବେଶରେ ନିଜ ଅଙ୍ଗ ମଣ୍ଡାଇ, ଶଙ୍ଖ ଘଣ୍ଟାଦି ଧ୍ୱନିରେ ଚତୁର୍ଦ୍ଦିଗ ନିନାଦିତ କରି ଧର୍ମର ଜୟ ପତାକା ବୃକ୍ଷାଗ୍ରେ ଫର୍ ଫର୍ ଉଡ଼ାଇବାକୁ ସମର୍ଥ ହୋଇପାରିଛି।"

ଏକଦା ମହାପୁରୁଷ ଆଶ୍ରମରେ ଉପବେଷ୍ଟ ହୋଇ ଶିଷ୍ୟ ବୃନ୍ଦଙ୍କୁ ଉପଦେଶାବଳୀ ଶୁଣାଉ ଥିବାବେଳେ, ଜନୈକ ଭଦ୍ରବ୍ୟକ୍ତି ଦଣ୍ଡାୟମାନ ହୁଅନ୍ତେ, ମହାପୁରୁଷ ତୁଳସୀ ଦଳଟିଏ ହସ୍ତରେ ଦେଇ ଧୀର ଗମ୍ଭୀର ସ୍ୱରରେ କହିଲେ—କିଛି ଚିନ୍ତା ନାହିଁ, ଏହି ଦଳଟି ନେଇ ଶୀଘ୍ର ଅଘାତ ପ୍ରାପ୍ତ ବ୍ୟକ୍ତି ମୁଖରେ ଦିଅ । ସେହି ଭଦ୍ରଲୋକ ଦଳଟି ନେଇ କ୍ଷିପ୍ର ଗତିରେ ନୈଋତକୋଣ ଦିଗକୁ ଗମନ କରି ସନ୍ନିକଟରୁ କ୍ରନ୍ଦନ ଧ୍ୱନି ଶୁଣି ମନ ଦୁଃଖରେ ଗୃହରେ ପ୍ରବେଶ ହୋଇ ଦେଖିଲେ ଯେ,—ବାଳକଟିକୁ ଶ୍ମଶାନକୁ ନେବାକୁ ସମସ୍ତ ଯୋଗାଡ଼ କରି ସାରିଲେଣି । ଭଦ୍ର ଲୋକଟି ନିଃଶବ୍ଦ ହୋଇ "ହୋଇ ଅଚ୍ୟୁତ" କହି, ଦଳଟି ମୃତ ବାଳକର ମୁଖ ଗହ୍ୱରରେ ପ୍ରବେଶ କରାଇବା ମାତ୍ରେ ବାଳକଟି ଚୈତନ୍ୟ ଲାଭ କଲା, ସମସ୍ତେ ଦେଖି ଅତି ଆଶ୍ଚର୍ଯ୍ୟାନ୍ୱିତ ହେଲେ । ତାହାର ସ୍ୱଜନ ବର୍ଗଙ୍କର ଆନନ୍ଦର ସୀମା ରହିଲା ନାହିଁ । ଅନେକ ପ୍ରକାର ବିଷ ଚିକିତ୍ସା କରାଇ ଆଦୌ ଫଳ ପାଇ ନ ଥିଲେ । ମାତ୍ର ମହାପୁରୁଷଙ୍କ ବାକ୍‌ସିଦ୍ଧି ହେତୁ ମୃତ ବାଳକ ଚୈତନ୍ୟ ଲାଭ କଲା । ସେହି ଦିବସରୁ ଅଦ୍ୟାବଧି ନେମାଲାଞ୍ଚଳର ଲୋକେ ସର୍ପ ଦଂଶନରୁ "ହୋଇ ଅଚ୍ୟୁତ" କହି ବିଷମୁକ୍ତ ହେଉ ଅଛନ୍ତି ।

ଧନ୍ୟ ମହାପୁରୁଷ, ଧନ୍ୟ ତୁମ୍ଭ ଯୋଗର ମାହାତ୍ମ୍ୟ, ସତ୍ୟସାଧନ ଓ ବାକ୍‌ସିଦ୍ଧି ଯୋଗୁଁ ଯେଉଁ ଶବ୍ଦ ଯୋଜନା କରି ଯାଇଛ, ତାହା ଆଜି ମନ୍ତ୍ରରୂପେ ପୂଜା ପାଉଅଛି ।

ଆଶ୍ରମରେ ଏହିପରି ଦୈନନ୍ଦିନ ଅସଂଖ୍ୟ ଅଦ୍ଭୁତ ଘଟଣା ଘଟିଥିବାର ବହୁ ତତ୍ତ୍ୱଜ୍ଞ ଜନ ମୁଖରୁ ଅବଗତ ହୋଇ ଥିଲେହେଁ ପୁସ୍ତକର କଳେବର ଭୟରେ ସମ୍ପୂର୍ଣ୍ଣ ଆଲୋଚନା ଉପେକ୍ଷିତ ହେଲା ।

ତଦନ୍ତେ ମହାପୁରୁଷ ଗୁରୁ ଗମ୍ଭୀର ସ୍ୱରରେ କହିବାକୁ ଲାଗିଲେ—ପ୍ରିୟ ଶିଷ୍ୟଗଣ ! କଦାପି ଅନର୍ଥକ ଗଳ୍ପ ବା କଥା କହି ସମୟର ଅପଚୟ କରିବା ଉଚିତ ନୁହେଁ । ବେଶି କଥା-ବାର୍ତ୍ତା କଲେ ମନ ଓ ଶରୀର ତେଜ ନଷ୍ଟ ହୋଇଯାଏ । ସଂସାରରେ ବିଭିନ୍ନ ପ୍ରକାର ଧର୍ମର ପ୍ରଚଳନ ଅଛି । କେବେହେଁ କୌଣସି ଧର୍ମପ୍ରତି ଅବଜ୍ଞା ପ୍ରକାଶ କରିବ ନାହିଁ । ଯାହାର ଯେଉଁ ଧର୍ମ ପ୍ରତି ବିଶ୍ୱାସ ଅଛି, ସେ ସେହି ଧର୍ମରେ ମୁକ୍ତିଲାଭ କରେ । ଯେଉଁ ଧର୍ମାବଲମ୍ବୀମାନେ ତୁମ୍ଭମାନଙ୍କ ସଦୃଶ ଖାଦ୍ୟର ବ୍ୟବହାର କରନ୍ତି ନାହିଁ ବା ତୁମ୍ଭର ରୀତିନୀତି ସହିତ ସେମାନଙ୍କର ରୀତିନୀତି କଦାପି ମିଳେ ନାହିଁ, ସେମାନଙ୍କ ଧର୍ମ ଉପେକ୍ଷଣୀୟ ବା ନିନ୍ଦନୀୟ ନୁହେଁ । ଜାତି ଧର୍ମ ନିର୍ବିଶେଷରେ ଯେ ଆକୁଳ ପ୍ରାଣରେ ଭକ୍ତି ଉଦ୍ଗତ ଚିତ୍ତରେ ସେହି କରୁଣା ସାଗରଙ୍କ-ଠାରେ କରୁଣ ନିବେଦନ କରେ, କେବଳ ଭଗବାନଙ୍କୁ ଲାଭ କରେ ।

ପୁନଃ ମହାପୁରୁଷ କହିବାକୁ ଲାଗିଲେ :—
ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି :—
ଚତୁର୍ବିଧା ଭଜନ୍ତେମା ଜନାଃସୁକୃତି ନୋଽର୍ଜୁନ,
ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀଚ ଭରତର୍ଷଭ,

ହେ ଅର୍ଜୁନ ! "କେହି ବିପଦର ସମ୍ମୁଖୀନ ହୋଇ, କେହି ମୋର ଗୁଣାବଳୀ ଅବଗତ ପାଇଁ, କେହି ବହୁଧନ ଆଶା କରି, କେହି ନିର୍ବାଣ ପଦ ପ୍ରାପ୍ତ ହେବାକୁ ମୋତେ ଭଜନ କରନ୍ତି । ଏହି ଚତୁର୍ବିଧ ଭକ୍ତମାନଙ୍କ ମଧ୍ୟରୁ ଜ୍ଞାନୀ ଶ୍ରେଷ୍ଠ ଅଟେ ।"

ପ୍ରିୟଶିଷ୍ୟ ଗଣ ! ଅସାର ସଂସାର କ୍ଷେତ୍ରରେ ମାୟାମୁଗ୍ଧ, ଭୋଗ-ବିଳାସ-ରତ, ସ୍ୱାର୍ଥାନ୍ଧ, ଅପରିମାଣ ଦର୍ଶୀ, ଇନ୍ଦ୍ରିୟଗଣଙ୍କ ଦାସ ଓ ଆଳସ୍ୟ ପରାୟଣ ହୋଇ ଜୀବନଯାପନ କରି ମାନବର

କର୍ତ୍ତବ୍ୟ ନୁହେଁ । ମନୁଷ୍ୟ ଜ୍ଞାନ ଖଡ୍ଗ ଦ୍ୱାରା ଏହି ଧୂଷ୍କରଦ୍ସମୂହକୁ ଛେଦନ କଲେ ମୁକ୍ତିଲାଭର ଅଧିକାରୀ ହୁଏ । ଏଥିପାଇଁ ପ୍ରାରମ୍ଭରୁ ଚେଷ୍ଟିତ ହୋଇ-ସତ୍ୟ-ଦେଖଲରେ ମଧ୍ୟ ଅସତ୍ୟ ନକହିବା ଅହିଂସା-ସାମାନ୍ୟଜୀବ ବା ଶତ୍ରୁର ବିନାଶ ବା ଅନିଷ୍ଟ ଇଚ୍ଛା ନ କରିବା, ନିର୍ଲୋଭ-ପରଧନ ପ୍ରତି ଆକୃଷ୍ଟ ନ ହେବା, ବ୍ରହ୍ମଚର୍ଯ୍ୟ-ନିୟମାନୁସାରେ ଯୌନକ୍ରିୟା ପାଳନ କରିବା ଅର୍ଥାତ୍ ଅପଣା ସ୍ତ୍ରୀକୁ ସବଦା ସ୍ତ୍ରୀ ବୋଲି ନ ଭାବିବା, ଦାନ-ଅତିଥ ବା ଅସହାୟ କର୍ତ୍ତବ୍ୟଶୂନ୍ୟ ରୋଗୀଲୋକ ଇତ୍ୟାଦିଙ୍କୁ ନମାଗିବା ପୂର୍ବରୁ ଦେବା, ଶୌଚ-ବାହ୍ୟାଭ୍ୟାନ୍ତର ପରିଷ୍କାର ରଖିବା, ସନ୍ତୋଷ-ମୁହୂର୍ତ୍ତିକ ପାଇଁ ଅଶାନ୍ତ ବା ଧୈର୍ଯ୍ୟଶୂନ୍ୟ ନ ହେବା, ବେଦାଧ୍ୟୟନ-ଭଗବତ ଚର୍ଚ୍ଚା କରିବା, ତପ ଓ ବିଷ୍ଣୁଭକ୍ତି ଇତ୍ୟାଦିଙ୍କ ବିଷୟମାନ ନିରବଚ୍ଛିନ ଭାବରେ ପାଳନ କରିବାକୁ ହେବ ।

ପୁନଃ ମହାପୁରୁଷ କହିବାକୁ ଲାଗିଲେ :—

"ଯେତେହେଁ କର୍ମ ଅନୁସର,
ଜ୍ଞାନ ବଳାକୁ ନୋହେ ସର ।"

ପ୍ରିୟଶିଷ୍ୟ ଗଣ ! "ବିବିଧ ପ୍ରକାର କର୍ମ ନିତ୍ୟ ସମାହିତ କରି ଭଗବାନଙ୍କ ପ୍ରୀତି ଭାଜନ ହେବା ପଥରେ ଅଗ୍ରସର ହେଉଥିଲେହେଁ; ଏପରି ସମୟ ସମ୍ମୁଖରେ ଉପସ୍ଥିତ ହୋଇ ପାରେ, ଯାହା ଦ୍ୱାରା କି ଦୁଷ୍ଟ ପ୍ରକୃତି ସମୂହ ହଠାତ୍ ଆକ୍ରମଣକାରୀରୂପେ ପ୍ରତୀୟମାନ ହୋଇ ସଂସାର ମାୟା ଜାଲରେ ମାନବକୁ ନିକ୍ଷେପ କରି ନିଷ୍ପେଷିତ କରିବାକୁ ପଶ୍ଚାଦପଦ ହୁଅନ୍ତି ନାହିଁ । ଜ୍ଞାନଶକ୍ତି ସେହି କୁପ୍ରବୃତ୍ତି ମାନଙ୍କ ଗତିରୋଧ କରି ପାରିଲେ ଅବଶ୍ୟ ନିର୍ମାଣ ପଦ ପ୍ରାପ୍ତ ହେବାକୁ ସକ୍ଷମ ହେବ ।

ଅସତ୍ୟ, ବ୍ୟଭିଚାର, ବିଳାସ, ଆଳସ୍ୟ, ଅସହିଷ୍ଣୁତା, ନିର୍ଦ୍ଦୟତା ଓ ଘୃଣା—ଏହିଗୁଡିକ ସମ୍ପୂର୍ଣ୍ଣ ଭାବେ ବର୍ଜନ କରିବାକୁ

ହେବ । ଏହିମାନେ ଜୀବନର ଘୋର ଅନିଷ୍ଟକାରୀ ସଶସ୍ତ୍ର ଶତ୍ରୁ ରୂପେ ଅହରହ ଜାଗ୍ରତ ଅବସ୍ଥାରେ ରହି ଅଛନ୍ତି । ପଲକ ମାତ୍ର ଅସାବଧାନତା ଅବଲମ୍ବନ କଲେ, ସେମାନେ ସେମାନଙ୍କ ଅସ୍ତ୍ର ଶସ୍ତ୍ର ପ୍ରୟୋଗ କରିବାକୁ ବିଳମ୍ବ କରିବେ ନାହିଁ । ବିବେକ ଶକ୍ତି-ବଳେ ଇନ୍ଦ୍ରିୟମାନଙ୍କୁ ଦମନ କରି ବିବେକ ବିଚକ୍ଷଣ ବ୍ୟକ୍ତିପକ୍ଷେ ସମ୍ଭବପର । ଅନ୍ୟଥା ଇନ୍ଦ୍ରିୟ ଗଣଙ୍କ ବଶବର୍ତ୍ତୀ ହୋଇ, ନାନାଦି ବିପଦର ସମ୍ମୁଖୀନ ହେବ । ବିବେକ ଶକ୍ତି ରହିତ ଅଧିକାଂଶ ବ୍ୟକ୍ତିମାନଙ୍କ ଦ୍ୱାରା ଜିତେନ୍ଦ୍ରିୟ ହେବା ଅସମ୍ଭବ ଜାଣି ଆର୍ଯ୍ୟ ମନୀଷିଗଣ ବିଶେଷ ଗବେଷଣା ସହରେ ଖାଦ୍ୟାଖାଦ୍ୟର ନିରୂପଣ କରି ଯାଇ ଅଛନ୍ତି । ସେଥି ପାଇଁ ନିରାମିଷ ବା ଶୀତ ବୀର୍ଯ୍ୟ ଖାଦ୍ୟ ସାତ୍ତ୍ୱିକ ଖାଦ୍ୟ ରୂପେ ବ୍ୟବହାର ହେଉଅଛି । ସେହି ଖାଦ୍ୟୋପକରଣ ଓ ତହିଁର ପାକ ପ୍ରଣାଳୀ ଭୁବନ ବିଖ୍ୟାତ ପୁରୁଷୋତ୍ତମ କ୍ଷେତ୍ର ବଡ଼ ଦେଉଳର ବଡ଼ ଦେବତାଙ୍କ ଅମଣୋହିର ପାକ କାର୍ଯ୍ୟରେ ନିୟମାନୁଯାୟୀ ବ୍ୟବହୃତ ହେଉଅଛି । ତାହାହିଁ ଜନ ସମାଜର ଆଦର୍ଶ ଖାଦ୍ୟ ।

ଖାଦ୍ୟ ପେୟ- ଦ୍ୱାରା ଶରୀର ପୁଷ୍ଟ କରାଇ ଇନ୍ଦ୍ରିୟମାନଙ୍କୁ ଶିଥିଳ କରିବା,-ଅବଶ୍ୟ ଠିକ୍ ନୁହେଁ । କାରଣ, ପ୍ରବଳ ବେଗଗାମୀ ଘୋଟକ ସମୂହ ରୂପ ଇନ୍ଦ୍ରିୟଗଣଙ୍କୁ ଉପଯୁକ୍ତ ଆବେଷ୍ଟି ହୋଇ ଯେ ଜ୍ଞାନ ରଜ୍ଜୁ ଦ୍ୱାରା ଆୟତ୍ତ କରିପାରେ, ସେ ଅବଶ୍ୟ ମନୁଷ୍ୟ ପଦ ବାଚ୍ୟ । ତଥାପି ମନୁଷ୍ୟ ନିରାମିଷ ଭୋଜୀ ହେଲେ, ତାହାର ଦିନ ମହାନନ୍ଦେ ଅତି ବାହିତ ହେବ । ସେ ଜୀବ—ହିଂସା ମହାପାପରେ ଭାଗୀ ହେବ ନାହିଁ । ଏହିପରି ମହାପୁରୁଷଙ୍କ ଶ୍ରୀମୁଖରୁ ସାର ଗର୍ଭିତ ଉପଦେଶମାନ ଶ୍ରବଣ କରି ଶିଷ୍ୟ ବୃନ୍ଦ ଦିବା-ବସାନ ହେବାରୁ ନିଜ ନିଜ ବାସଭବନକୁ ପ୍ରତ୍ୟାଗମନ କଲେ । ରାମଚନ୍ଦ୍ର ମଧ୍ୟ ସେମାନଙ୍କ ସହିତ ପ୍ରତ୍ୟାବୃତ୍ତ କଲେ ।

ଭକ୍ତ ପ୍ରାଣ ରାମଚନ୍ଦ୍ର, ଆଶ୍ରମରେ ଘଟୁଥିବା ଅଲୌକିକ ଘଟଣା-ମାନଙ୍କ ପ୍ରତି ଲକ୍ଷକରି ବିଶ୍ରାମ ସମୟରେ ଭାବନ୍ତି ମହାପୁରୁଷଙ୍କର ଅସାମାନ୍ୟ ଶକ୍ତି କେଉଁଠି ? ସେ, ତାହାଙ୍କର ଯୋଗଶକ୍ତି ହେତୁ, ବର୍ତ୍ତମାନ ଜନସମାଜରେ ଅଦ୍ୱିତୀୟ । ସେ ବହୁ ଆୟାସ ସତ୍ତ୍ୱେ ମୁକ୍ତି ଓ ସତ୍ୟର ପଥ ଦେଖାଇବାକୁ ନିଜପରିକର । ତେବେ ମନୁଷ୍ୟ କାହିଁ ? ତାହାଙ୍କର ପ୍ରାଣସ୍ପର୍ଶୀ ମଧୁର ଓଁକାର ପ୍ରତିତ ଆକୃଷ୍ଟ ହେଉନାହିଁ ? ଥରେ ମାତ୍ର ସେହି ଅମିୟ ବାଣୀ କର୍ଣ୍ଣ ପଥରେ ପାନ କଲେ ମନୁଷ୍ୟର ଜୀବନ ଚିର ଦିନ ପାଇଁ ଜୀବୋନ୍ମୁକ୍ତର ପଥ ପରିଷ୍କାର କରି ଧାରିବ । ଦୟାମୟ ମହା-ପୁରୁଷ, ଅଧୀନ ପ୍ରତି ଦୟା ପରବଶ ହୋଇ, ଅଧମକୁ ଯୋଗଶିକ୍ଷା ଦେଲେ, ଅଧମ ସଂସାର ବନ୍ଧନରୁ ଅବଶ୍ୟ ମୁକ୍ତ ହୁଅନ୍ତା, ରାମଚନ୍ଦ୍ର ଏହି ବିଷୟ ଚିନ୍ତା କରୁଁ କରୁଁ ନିଶୀ ଅବସାନ ହେଲା ।

ପ୍ରତ୍ୟୁଷରୁ ରାମଚନ୍ଦ୍ର ସ୍ନାନାଦି ସାରି ଆଶ୍ରମାଭିମୁଖେ ଧାବିତ ହେଲେ । ସେତେବେଳକୁ ମହା ପୁରୁଷ ତାହାଙ୍କର ଦୈନନ୍ଦିନ କର୍ମ ଶେଷକରି ଗୋଟିଏ ବୃଦ୍ଧ କ୍ଷୀଣ କାୟ କ୍ଷତ ବିକ୍ଷତ ବଣିଷ୍ଟ କୁକୁରକୁ ସ୍ୱହସ୍ତରେ ଅନ୍ନ ବ୍ୟଞ୍ଜନ, ତାହାର ଆହାର ନିମିତ୍ତ ପରିବେଷଣ କରୁଥାନ୍ତି । କ୍ରମେ କ୍ରମେ କୁକୁରଟି ଖାଇ ସାରି ଆନନ୍ଦ ଲାଭ କଲା । ରାମଚନ୍ଦ୍ର ବହୁ ବାର ପ୍ରଣାମ ପୂର୍ବକ ମହା-ପୁରୁଷଙ୍କ ଚରଣ ଧୂଳି ଗ୍ରହଣ କଲେ । ମହାପୁରୁଷ, ରାମଚନ୍ଦ୍ରଙ୍କୁ ବସିବା ନିମିତ୍ତ ସଙ୍କେତ ଦ୍ୱାରା କହି, ଅପଣାର ଅବଶିଷ୍ଟ କାର୍ଯ୍ୟ ଗୁଡ଼ିକ ଶେଷ କରି ସ୍ୱୀୟ ଆସନରେ ଅସୀନ ହେଲେ ।

ମହାପୁରୁଷ, ରାମଚନ୍ଦ୍ରଙ୍କ ଅନ୍ତର କଥା ଜାଣି କହିଲେ 'ବତ୍ସ ! ତୁମ୍ଭେ ଯୋଗଶିକ୍ଷା କରିବାକୁ ମନ ବଳାଇଛ । ଯୋଗ ତିନି ପ୍ରକାର । ଧ୍ୟାନ, ସାଂଖ୍ୟ ଓ କର୍ମ । ଯୋଗୀ ଋଷିମାନେ ଧ୍ୟାନ ଯୋଗ, ମଧ୍ୟମ ଶ୍ରେଣୀର ଲୋକେ ସାଂଖ୍ୟ ଯୋଗ, ଓ

ପ୍ରାରମ୍ଭ କାର୍ଯ୍ୟମାନେ କର୍ମ ଯୋଗ ସାଧନ କରନ୍ତି । ଯେଉଁମାନଙ୍କୁ ଯୋଗ ଅତଦୌ ଜଣାନାହିଁ, ସେମାନେ ଜାଣିଥିବା ଲୋକମାନଙ୍କ ଠାରୁ ଶୁଣି ଉପାସନା କରନ୍ତି । ଉପାସନା ଶ୍ରଦ୍ଧା ଓ ଭକ୍ତି ପୂର୍ଣ୍ଣ ଥିଲେ, ଭଗବାନ ଦର୍ଶନ ଦେଇ ସଂସାର ବନ୍ଧନରୁ ମୁକ୍ତ କରନ୍ତି । ସର୍ବ ପ୍ରଥମେ ଉପାସନାରୁ ଭକ୍ତିର ସଞ୍ଚାର ହୁଏ ।

ଭଗବାନ ଶ୍ରୀକୃଷ୍ଣ ଗୀତାରେ କହୁଛନ୍ତି ।

" ଅନ୍ୟେ ତ୍ୱେବ ମଜାନନ୍ତଃ
ଶ୍ରୁତ୍ୱା ନ୍ୟେଭ୍ୟ ଉପାସତେ
ତେଽପି ଚାତି ତରନ୍ତ୍ୟେବ
ମୃତ୍ୟୁଂ ଶ୍ରୁତି ପରାୟଣାଃ "

ହେ ଅର୍ଜୁନ ! ଅନ୍ୟଠାରୁ ଶୁଣି ଉପାସନା କଲେ ମଧ୍ୟ ମୁକ୍ତି ମିଳେ । ତୁମ୍ଭେ ଯୋଗ ମାର୍ଗର ଅଧିକାରୀ ନୁହଁ । ବର୍ତ୍ତମାନ ଉପାସନା ମାର୍ଗର ଉପଯୁକ୍ତ । ଅତଏବ ଉପାସନା ମାର୍ଗରେ ପ୍ରବୃତ୍ତ ହୁଅ ।

ଯୋଗଦ୍ୱାରା ବା ଉପାସନା ଦ୍ୱାରା ଯେ ବନସ୍ଥ ସଦା ନିର୍ମଳ ହୃଦୟରେ ମନନିବେଶ ପୂର୍ବକ ସମାଧୀ କରେ, ପରମାତ୍ମା ପରମେଶ୍ୱର ତାହାର ମନ ବାଞ୍ଛା ପୂରଣ କରନ୍ତି । କାମନା ତ୍ୟାଗ ନକଲେ ମୁକ୍ତି ଅସମ୍ଭବ, ମୁକ୍ତିକାମୀର ଭୂଷଣ ତ୍ୟାଗ । ଧର୍ମ, ଅର୍ଥ, କାମ, ମୋକ୍ଷ, ପ୍ରତ୍ୟେକ ଜୀବର ଲକ୍ଷ । ମୁକ୍ତି ଅପେକ୍ଷା ଶ୍ରେଷ୍ଠବସ୍ତୁ ପୃଥିବୀରେ କିଛି ନାହିଁ । ଆତ୍ମଜ୍ଞାନ ଅପେକ୍ଷା ଆଉ ଅନ୍ୟ ଜ୍ଞାନ ନାହିଁ । ସର୍ବଦା ମୁକ୍ତି କାମନା କର । ଆତ୍ମଜ୍ଞାନରେ ବ୍ରତୀ ହୁଅ । ସଂସାରରେ ଯେତେ ପ୍ରକାର ଦାନ ଅଛି । ଜ୍ଞାନ ଦାନ ସର୍ବାପେକ୍ଷା ଶ୍ରେଷ୍ଠ ଦାନ ଅଟେ । ଏହି ଦାନରେ ଅଶେଷ ଅମୂଲ୍ୟରତ୍ନ ନିହିତ ଅଛି । ଏହା ଧୈର୍ଯ୍ୟ ସହିତ ପ୍ରଚାର କରିବାକୁ ଚେଷ୍ଟା କର ।

ଶ୍ରୀମାନ୍ ମହାପୁରୁଷ ଅଚ୍ୟୁତାନନ୍ଦ, ରାମଚନ୍ଦ୍ରଙ୍କୁ ଯେଉଁ ଉପଦେଶାବଳୀ ପ୍ରଦାନ କଲେ, ସେ ତାହା ପ୍ରାପ୍ତ ହୋଇ ଜୀବନକୁ ଧନ୍ୟ ମନେ କଲେ । ତାହାଙ୍କର ମନ ପ୍ରାଣ ପବିତ୍ର ହେଲା । ସେ ସ୍ୱୟଂ ଜୀବନର ସାରବସ୍ତୁ ଅନୁଭବ କଲେ । ପୁସ୍ତକର ବିଶାଳତା ଉପରେ ଅନ୍ୟାନ୍ୟ ବିଷୟ ଗୁଡ଼ିକର ଆଲୋଚନା ଉପେକ୍ଷିତ ହେଲା । ଦ୍ୱିତୀୟ ଭାଗରେ ସପ୍ତାଙ୍ଗ ଇତ୍ୟାଦି କେତେକ ବିଷୟ ଦେଇ ଦିବାର ବାସନା ରହିଲା । ସେହି ମହାତ୍ମା ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ରଚିତ ପଦ୍ମ କଳ୍ପ, ଶୂନ୍ୟ ସଂହିତା, ବଟିକ ଗୀତା, ତତ୍ତ୍ୱ ବୋଧିନୀ ପ୍ରଭୃତି ଗ୍ରନ୍ଥ ଆଲୋଚନା କଲେ ପଠନ ପାଠିକା ଗଣ ଅବଶ୍ୟ ଶରୀର ସମ୍ବନ୍ଧୀୟ ଅନେକ ଜ୍ଞାନ ଅର୍ଜନ କରିବେ ।



## ଅଷ୍ଟମ ପରିଚ୍ଛେଦ

## ତୀର୍ଥ ଭ୍ରମଣ ।

ଭାରତର ବିଭିନ୍ନ ସ୍ଥାନରେ ହିମାଳୟ ଠାରୁ କୁମାରିକା ପର୍ଯ୍ୟନ୍ତ ସମସ୍ତ ଦେଶଟି ଯେ ତୀର୍ଥରେ ପରିପୂର୍ଣ୍ଣ, ତାହା କାହାରିକୁ ଅବିଦିତ ନାହିଁ । ପ୍ରତ୍ୟେକ ତୀର୍ଥସ୍ଥାନ ଦେବତାମାନଙ୍କ ଲୀଳାକ୍ଷେତ୍ର ଓ ପ୍ରତ୍ୟେକ ଦେବତା ଭଗବାନଙ୍କ ଅଂଶ ସ୍ୱରୂପ । ଯେ ଯେଉଁ ରୂପରେ ଭଗବାନଙ୍କୁ ମନ ପ୍ରାଣ ଦେଇ ଆରାଧନା କରେ, ସେ ତାହାକୁ ସେହି ରୂପରେ ଦର୍ଶନ ଦେଇଥାନ୍ତି । ପ୍ରତ୍ୟେକ ତୀର୍ଥ ସ୍ଥାନରେ ବାସ କଲେ, ସ୍ୱତଃ ଭଗବତ ପ୍ରେରଣାରେ ଉଦ୍ରେକ ହୁଏ । କଳୁଷିତ ମନରୁ କଳଙ୍କ ବିଧୌତ ହୋଇଯାଏ ।

ଆଜି ସେହି ଶୁଭ ମାସ ଆଷାଢ ଶୁକ୍ଳପକ୍ଷ ଦ୍ୱିତୀୟା, ଜଗତ୍ ପିତା ଜଗନ୍ନାଥ ରଥୋପରି ଆସୀନ ହୋଇ, ଗୁଣ୍ଡିଚା ଯାତ୍ରା ସମ୍ପୂର୍ଣ୍ଣ କରିବେ । ଏଥି ପାଇଁ ଅଗଣିତ ଜନତାରୁ ଶତ ଶତ

ଭାରତର ଅବତରଣ ଲାଗି ରଥ ନିର୍ମାଣ କରୁଅଛନ୍ତି । ପୁଣି ସେଥିଟି ବଭିନ୍ନ ପ୍ରକାର ଉପକରଣ ଦ୍ୱାରା ସାଜସଜା ହୋଇ ଜନମନ ଆକର୍ଷଣ କରୁଅଛି । ପତିତ ଜାତିମାନଙ୍କୁ ଦର୍ଶନ ଦେବା ନିମିତ୍ତ ସ୍ୱୟଂ ଜଗନ୍ନାଥ ଭକ୍ତ ଯାଉଅଛନ୍ତି ଭିଆଇଛନ୍ତି । ଭାରତର ବିଭିନ୍ନ ଅଞ୍ଚଳରୁ ବିଭିନ୍ନ ଶ୍ରେଣୀର ସହସ୍ର ସହସ୍ର ଲୋକ ହର୍ଷୋତ୍ଫୁଲ୍ଲ ଚିତ୍ତରେ ଏହି ଉତ୍ସବ ଦର୍ଶନାଭିଳାଷୀ ହୋଇ ପ୍ରଧାବିତ ହୋଇ ଅଛନ୍ତି । "ଜୟ ଜଗନ୍ନାଥ ସ୍ୱାମୀଙ୍କ ଜୟ" ନାଦରେ ଆକାଶ ମେଦିନୀ ଉଚ୍ଛୁଳାଉଛନ୍ତି । କେତେ କେତେ ସେବକଗଣ ଜଗନ୍ନାଥଙ୍କୁ ରଥୋପରେ ବିଜୟ କରାଇବା ନିମିତ୍ତ ପ୍ରସ୍ତୁତ ହୋଇ ଗଲେ । ରାସ୍ତା ପରିଷ୍କାର କରାଗଲା । ମହାରାଜା ପ୍ରତାପରୁଦ୍ର ଦେବ ସ୍ୱୟଂ ଶ୍ରୀହସ୍ତରେ ଛେରା ପହଁରା କଲେ । ପ୍ରଥମେ ବଡ଼ ଠାକୁର ବିଜୟ ହୋଇ ଗୋଟିକ ପରେ ଗୋଟିଏ ଯଥା କ୍ରମେ ତିନିମୂର୍ତ୍ତି ବିଜୟ ହେଲେ । ବଡ଼ଦାଣ୍ଡ ଲୋକାରଣ୍ୟ ହୋଇଗଲା । ରଥ ମଧ୍ୟ ଗଲା ଯେଉଁ ସ୍ୱର୍ଗୀୟ ସୁଷମାର ଅମୂଲ୍ୟ-ସମ୍ପଦ ଦର୍ଶକମାନଙ୍କ ନୟନ ଗୋଚର ହେଲା, ସେହି ମନୋହର ଦୃଶ୍ୟଟି ଯାହାର ନୟନ ପଥରେ ଥରେ ମାନ ଅଧିରୂଢ଼ ହୋଇଅଛି; ସେ ତାହାର ଜୀବନରେ କଦାପି ଭୁଲି ପାରିବ ନାହିଁ । ତେବେ ସେହି ମହାନନ୍ଦ ଭୋଗ କରିବାକୁ କେବଳ ବାଧା ଦେଉଥିଲା—ଗ୍ରୀଷ୍ମର ଉତପ୍ତ ମର୍ମ ଭେଦୀ ଝଞ୍ଜା ବାୟୁ ।

ମହାରାଜା ବାହାଦୂର ବହୁ ଅଯ୍ୟାସ ପୂର୍ବକ ଗୋଟିଏ ସେବକ ବାହିନୀ ଗଢିଥିଲେ । ଦର୍ଶନ-ପ୍ରାୟସୀ ଆଗନ୍ତୁକ ଯାତ୍ରୀମାନଙ୍କୁ ସେହିମାନଙ୍କ ଦ୍ୱାରା ପାଣି ଓ ପବନ ଯୋଗାଇବାର ବ୍ୟବସ୍ଥା କରି ଯାଇଥିଲା । ସେଥି ପାଇଁ ଯାତ୍ରୀମାନଙ୍କ କ୍ଳାନ୍ତ କଥଞ୍ଚିତ ଲାଘବ ହୋଇ ପାରିଥିଲା । ତୀର୍ଥ ଭ୍ରମଣରେ ବହିର୍ଗତ ହୋଇ ଶ୍ରୀମାନ୍ ମହାପ୍ରଭୁଙ୍କ ଅଚ୍ୟୁତ,, ତାହାଙ୍କର ପ୍ରିୟଶିଷ୍ୟ ଶ୍ରୀଯୁକ୍ତ

ରାମଚନ୍ଦ୍ରଙ୍କ ସହିତ ଧର୍ମାର୍ଥୀଙ୍କ ରଥପଥରେ ଭଗବାନଙ୍କ ଦର୍ଶନ ଲାଭ କଲେ । କିଛିକ୍ଷଣ ପରେ ରଥ ପଥର ଅନତିଦୂରରେ ଅବରଣ ମଧ୍ୟରୁ କେନୈକ ରମଣୀର ଶୋକାକୁଳକ୍ରନ୍ଦନଧ୍ୱନି ତାହାଙ୍କର ଶ୍ରୁତି ଗୋଚର ହେଲା । ସେ ସିଦ୍ଧ ପୁରୁଷ, ମୁହୂର୍ତ୍ତକ ମଧ୍ୟେ ସମସ୍ତ ଘଟଣା ଅବଗତ ହେଲେ । ପ୍ରିୟଶିଷ୍ୟ ରାମଚନ୍ଦ୍ରଙ୍କୁ ଇଙ୍ଗିତ ଦ୍ୱାରା ସେହି ସ୍ଥାନରେ ରଖାଇ, ସ୍ୱୟଂ ସେ ରମଣୀ ନିକଟରେ ଦଣ୍ଡାୟମାନ ହୋଇ, ତାହାଙ୍କର ମୃତ ପତିଙ୍କୁ ଯମାଳୟରୁ ଫେରାଇ ଆଣିଲେ । ସେ ରମଣୀ ସେ କିଏ ? ତାହାଙ୍କର ପତିଙ୍କର ସେ କିପରି ମୃତ୍ୟୁ ଘଟିଲା ? ମହାପୁରୁଷ ସେ କିପରି ତାହାଙ୍କୁ ଜୀବନ ଦାନ ଦେଲେ ? ତାହା ଜାଣିବାକୁ ପାଠକ ପାଠିକାଗଣ ଅବଶ୍ୟ ଉଦ୍‌ବିଗ୍ନ ହେଉଥିବେ । ତାହା ହେବାର କଥା, ଉଦୟ ରବିକୁ ଅବରଣ ଦ୍ୱାରା ଘୋଡ଼ାଇ ରଖିବା ଯେପରି ସହଜ ନୁହେଁ, ସେହିପରି ମହାପୁରୁଷ ଲୋକ ଲୋଚନାନ୍ତରାଳରେ ଅସାଧ୍ୟ ସାଧନ କରିଥିଲେହେଁ ତାହା ବାହାରକୁ ଫୁଟି ଉଠିଲା । ସେହି ରମଣୀର ଗୃହ ମାଳବ ପ୍ରଦେଶରେ ଅଛି । ପତି-ପତ୍ନୀ ବହୁଦର୍ଶନରେ ମନ ବଳାଇ ଶ୍ରୀକ୍ଷେତ୍ରକୁ ଆସି ପ୍ରଭୁଙ୍କ ଦର୍ଶନ ପାଇ କେନୈକ ଜଗନ୍ନାଥ ସେବକଙ୍କ ଗୃହରେ ଗୁଣ୍ଡିଚା ଯାତ୍ରା ଶେଷ ପର୍ଯ୍ୟନ୍ତ ଆଶ୍ରୟ ନେଇ ଥିଲେ । ଦୈବ ବଶତଃ ତାହାର ପତି ମହାମାରୀ ରୋଗରେ ଆକ୍ରାନ୍ତ ହୋଇ ପ୍ରାଣ ହରାଇଥିଲେ । ଏକାକିନୀ ରମଣୀ ପତିଙ୍କ ଅକାଳ ବିୟୋଗରେ ଦୁଃଖିତା ହୋଇ କ୍ରନ୍ଦନ ରୋଳରେ ଆକାଶ ମେଦିନୀ କମ୍ପାଉ ଥିଲା ।

ସେହି ତୀର୍ଥ ଯାତ୍ରୀ ପଞ୍ଚ ଲାଭ କରି ସମସ୍ତ ଘଟଣା ତାହାଙ୍କ ପ୍ରାଣସମା ପତ୍ନୀଙ୍କ ମୁଖରୁ ପୁଙ୍ଖାନୁପୁଙ୍ଖ ଅବଗତ ହୋଇ ହର୍ଷାଶ୍ରୁନନ୍ଦ ଚିତ୍ତରେ ମହାପୁରୁଷଙ୍କ ଦର୍ଶନ ନିମିତ୍ତ ଯେତେ

ଦୂରଙ୍କ ଉଦ୍ଦେଶ୍ୟରେ, ମହାପୁରୁଷ ଅଚ୍ୟୁତଙ୍କ ବିରୁଦ୍ଧେ ଅପବାଦ ଉପସ୍ଥାପିତ କଲେ ।

ମହାରାଜା ବାହାଦୂର ପ୍ରତାପରୁଦ୍ର ଦେବ, ବ୍ରାହ୍ମଣେତର ଜାତ ବେଦ ପଠନ ଓ ବ୍ୟାଖ୍ୟାନ ବୃତ୍ତାନ୍ତ ହୃଦୟଙ୍ଗମ କରି, ମହାପୁରୁଷଙ୍କୁ ଅନତି ବିଲମ୍ବେ ଦରବାରରେ ଉପସ୍ଥିତ କରାଇବାକୁ ଶାନ୍ତ୍ରି ସେନା ପ୍ରେରଣ କଲେ ।

କାଳାନ୍ତକ ନାମ ସଦୃଶ ସେନାଦ୍ୱୟ ହସ୍ତରେ ଯଷ୍ଟି ଧାରଣ ପୂର୍ବକ ଶ୍ରୀମାନ୍ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ନିକଟରେ ଦଣ୍ଡାୟ-ମାନ ହେଲେ । ମହା ପୁରୁଷଙ୍କ ଗୋଚର ରହିତ ସଂସାରରେ କୌଣସି ବିଷୟ ନାହିଁ, କହିଲେ ଅତ୍ୟୁକ୍ତି ହେବ ନାହିଁ । ସେନା ଦ୍ୱୟ ପ୍ରବେଶ ସମୟେ ସେ ଧ୍ୟାନ ମଗ୍ନ ଥିଲେ । ଧ୍ୟାନରୁ ବିରତ ରହି, ସେମାନଙ୍କ ସହିତ କଥୋପକଥନ କରି ଅନୁଚିତ ମନେ କରି, ଲୋକ ଲୋଚନରୁ ଅଦୃଶ୍ୟ ହେବା ନିମିତ୍ତ ବାଞ୍ଛାକରି ପୂର୍ବବତ୍ ଧ୍ୟାନରେ ମଗ୍ନହେଲେ ।

ସେନାଦ୍ୱୟ ସଯତ୍ନେ ଚତୁର୍ଦ୍ଦିଗ ନିରୀକ୍ଷଣ କରୁଥିଲେ ହେଁ ସନ୍ନିକଟ ଧ୍ୟାନ ମଗ୍ନ ଥିବା ମହାପୁରୁଷଙ୍କୁ ଆଦୌ ଦେଖି ପାରିଲେ ନାହିଁ । ଅନ୍ୱେଷଣାର୍ଥୀ ହୋଇ ଉପସ୍ଥିତ ବ୍ୟକ୍ତି ବିଶେ-ଷଙ୍କୁ ବାରମ୍ବାର ଜିଜ୍ଞାସା କରିବାକୁ ଲାଗିଲେ । କିନ୍ତୁ ସେମାନଙ୍କର ବାକ୍ୟ ପୁଞ୍ଜ ପ୍ରତି, ମହାପୁରୁଷଙ୍କ ପ୍ରଗାଢ଼ ମାୟା ହେତୁ କାହାରି କର୍ଣ୍ଣ ଗୋଚର ହେଲା ନାହିଁ ।

ଧ୍ୟାନାନ୍ତେ ମହାପୁରୁଷ ହର୍ଷ-ପୂର୍ଣ୍ଣ ଗମ୍ଭୀର ସ୍ୱରରେ କହି-ବାକୁ ଲାଗିଲେ । ବନ୍ଧୁଗଣ ! ପରମେଶ୍ୱରଙ୍କ ଅଶେଷ କରୁଣା ବଳେ ତୁମ୍ଭମାନଙ୍କର ଆଗମନର କାରଣ ସମ୍ପୂର୍ଣ୍ଣ ଜାଣେ । ତୁମ୍ଭେ ମାନେ ଧୈର୍ଯ୍ୟ ଚ୍ୟୁତ ନ ହୋଇ ରାଜାଜ୍ଞା ପାଳନ କର ।

ତଦନନ୍ତର ମହାପୁରୁଷ ଅଗେ ଅଗେ ପ୍ରାଣ କ୍ଷେପ କରିବାକୁ ଲାଗିଲେ । ସେନାଦ୍ୱୟ, ତାହାଙ୍କର ପଶ୍ଚାଦ୍ ଗାମୀ ହୋଇ ଗମନ କରୁଥିବା ବେଳେ, ଜଗମୋହନରେ ଘଟିଥିବା ଅତ୍ୟାଶ୍ଚର୍ଯ୍ୟ ଘଟଣାଟି ଉଭୟଙ୍କ ମନକୁ ବାରମ୍ବାର ଆଲୋଡିତ କରୁଥାଏ ।

ହାୟ ହାୟ ଯେଉଁ ମହାପୁରୁଷ ଯୌଗୀଶକ୍ତି ବଳେ ଅବ-ଭୂତ ହୋଇ ଐହିକ, ପାରତ୍ରିକ, ଆଧ୍ୟାତ୍ମିକ ଏପରିକି ଜୀବନର ସର୍ବବିଧ କ୍ଷେତ୍ରରେ ଆଦର୍ଶ ସ୍ଥାନୀୟ, ଯାହାଙ୍କ ଶରୀର ଅଶେଷ ଶାନ୍ତିରସରେ ପରିପୂର୍ଣ୍ଣ, ଯାହାଙ୍କର ଅମୃତ ମୟ ବାଣୀ ସମୂହ ମାନବର କର୍ଣ୍ଣ ଗହ୍ୱରେ ପ୍ରବେଶ ମାତ୍ରେ, ହୃଦୟରେ ଅନିର୍ବଚ-ନୀୟ ପ୍ରସନ୍ନତା ଓ ମହତ୍ତ୍ୱ ଉପଲବ୍ଧି ହୁଏ । ଯାହାଙ୍କ ହୃଦୟ ହିଂସା, ଦ୍ୱେଷାଦି ବିରହିତ, ସେହି ମହା ମାନବଙ୍କୁ ପୁଣି ମହା-ରାଜାଙ୍କର କଠୋର ଆଦେଶ । ମହାପୁରୁଷ, ରାଜ ସିଂହାସନ ନିକଟରେ ଉପସ୍ଥିତ ହୁଅନ୍ତେ, ମହାରାଜା ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟସ୍ତ ଥିବାହେତୁ, ଆଦେଶ ହେଲା—'ଏହାଙ୍କୁ ରାଜ ବାଟିରୁ ଗୋଟିଏ ପ୍ରକୋଷ୍ଠ ମଧ୍ୟରେ ସ୍ଥାନ ଦିଆଯାଇ ପ୍ରହରୀ ଗଣଙ୍କ ଦ୍ୱାରା ବନ୍ଧି ମତ ପ୍ରହରା ଦିଆଯାଉ ।

ତଦନୁସାରେ ଉପଯୁକ୍ତ ବ୍ୟବସ୍ଥା କରାଗଲା । ପ୍ରହରୀଗଣ ମହାପୁରୁଷଙ୍କୁ ପ୍ରକୋଷ୍ଠ ମଧ୍ୟେ ସ୍ଥାନ ଦେଇ କିଳିକା ଦ୍ୱାର ବନ୍ଦୀ କରୁଛି ପୂର୍ବକ ଦ୍ୱାର ଦେଶରେ ଦଣ୍ଡାୟମାନ ହେଲେ ।

ସେତ ମହାପୁରୁଷ, ତାଙ୍କୁ କାୟିକ ଶକ୍ତିବଳେ ଆବଦ୍ଧ କରିବା ଶକ୍ତି କାହାର ? ସେ ପ୍ରହରୀଗଣଙ୍କ ଦ୍ୱାରା ରକ୍ଷିତ ହୋଇ-ଥିଲେ ସୁଦ୍ଧା, ଯୋଗ ଶକ୍ତି ବଳେ ପର ମୁହୂର୍ତ୍ତରେ ଜଗ ମୋହନରେ ପୂର୍ବବତ୍ ଆସୀନ ହୋଇ ବ୍ରହ୍ମବିଦ୍ୟା ବ୍ୟାଖ୍ୟାନ କରିବାକୁ ଲାଗିଲେ ।

କିଛି ସମୟ ପରେ ମହାରାଜା ବାହାଦୁର ପ୍ରଧାନ ମନ୍ତ୍ରୀଙ୍କ ସଙ୍ଗେ ଜଗନ୍ନାଥ ଦର୍ଶନକୁ ବିଜୟ ହେଉଥିବା ବେଳେ, ମହାରାଜା ସ୍ୱଚକ୍ଷୁରେ, ପ୍ରକୋଷ୍ଠ ମଧ୍ୟସ୍ଥିତ ମହାପୁରୁଷଙ୍କୁ ଦେଖି ଅସିଥିଲେ ।

ଏଣେ ଜଗମୋହନରେ ପ୍ରତବଣ ମାଣ୍ଡ୍ରେ ସେହି ମହାପୁରୁଷଙ୍କୁ ଦେଖି ଚମତ୍କୃତ ହେଲେ । ଏହା ମାୟା ନା ସତ, ଏହି ସେହି ମହାତ୍ମା ନା ଅନ୍ୟ କିଛି ସ୍ଥିର କରି ପାରିଲେ ନାହିଁ । ମହାରାଜାଙ୍କ ମନରେ ସନ୍ଦେହ ପୂର୍ଣ୍ଣ ମାତ୍ରାରେ ଉଦୟ ହେଲା । ମହାରାଜା, ଏହି ଅଦ୍ଭୁତ ସନ୍ଦେହାତ୍ମକ ବିଷୟଟି ବିବୃତ ନ କରି, ରାଜ-ପ୍ରାସାଦାଭି ମୁଖେ ପ୍ରସ୍ଥାନ କଲେ । କିନ୍ତୁ କରୁଦ୍ଧ ପ୍ରକୋଷ୍ଠ ମଧ୍ୟସ୍ଥିତ ମହାପୁରୁଷଙ୍କୁ ଦେଖି ଅତ୍ୟାଶ୍ଚର୍ଯ୍ୟ ହେଲେ । ଯୋଗ ଶକ୍ତିର ମହାତ୍ମ୍ୟକୁ ମନେ ମନେ ପ୍ରଶଂସା ନକରି ରହି ପାରିଲେ ନାହିଁ । ମହାପୁରୁଷଙ୍କ ଅସାଧାରଣ ଶକ୍ତି ନିଜ ଅବଧାନକୁ ଆସିବାରୁ, ସ୍ୱୟଂ ମହାରାଜା କୃପାଭିକ୍ଷା ନିମିତ୍ତ ପ୍ରାର୍ଥୀ ହେଲେ । ମହାପୁରୁଷ ମଧ ତାହାଙ୍କ ପ୍ରାର୍ଥନା ନିର୍ମଳ ଅନ୍ତର ସହିତ ଗ୍ରହଣ କଲେ ।

ଗୃହଁ ଗୃହଁ ଏହି ଆଶ୍ଚର୍ଯ୍ୟାନ୍ୱିତ ଘଟଣାଟି ବିଦ୍ୟୁତ ବତ୍ ଆକାଶ ମାର୍ଗରେ ଖେଳିଲା ପରି ଜନପଦରେ ଖେଳିଗଲା । ଲୋକେ ସେହି ଦିନୁ ଶିଖିଲେ ଅଚ୍ୟୁତ ପ୍ରକୃତ ଭଗବାନଙ୍କର ଗୋଟିଏ ଅଂଶ ।

କାର୍ତ୍ତିକ ମାସ, ଏହି ମାସଟି ଅତୀବ ପବିତ୍ର । ବର୍ଷାର ପାଦୁର୍ଭାବ ଆଉ ନାହିଁ । ଆକାଶ, ତାହାର ସ୍ୱାଭାବିକ ନିର୍ମଳ ନୀଳ ରଙ୍ଗଧରି ଜନ ମନ ହରଣ କରୁଅଛି । ଶରତ ଋତୁଟି ପୂର୍ଣ୍ଣଭାବେ ପୃଥିବୀରୁ ତିରୋହିତ ହୋଇ ନଥିଲେ ହେଁ, ହେମନ୍ତ ତାହାର ପ୍ରଭାବ ଧୀରେ ଧୀରେ ବିସ୍ତାର କରିବାକୁ ଲାଗିଛି । ଏହି ଶୁକ୍ଳ ପଞ୍ଚମୀ ମେଳାରେ ଯୋଗ ଦେବାକୁ ଭାରତର ବିଭିନ୍ନ ଅଞ୍ଚଳର ଅସଂଖ୍ୟ ନର ନାରୀ ଉତ୍ସାହ ସହିତ ଆସୁ ଅଛନ୍ତି ।

ଏହି ସେହି ସେତୁବନ୍ଧ ରାମେଶ୍ୱର, ଯେଉଁଠାରେ ସ୍ୱୟଂ ରାମଚନ୍ଦ୍ର ବାନର ଓ ଭଲ୍ଲୁକ ପ୍ରଭୃତି ବନ୍ୟ ଜନ୍ତୁ ମାନଙ୍କୁ ଅତୁଳନୀୟ ସ୍ନେହ ବଳରେ ଆପଣା ବଶୀଭୂତରେ ରଖି ସିନ୍ଧୁ ଲଙ୍ଘନ ନିମିତ୍ତ ଯେଉଁ ସେତୁ ନିର୍ମାଣ କରିଥିଲେ । ଯାହାଙ୍କ ଆଜ୍ଞାରେ ପ୍ରସ୍ତର ସମୂହ

ଜଳରେ ଭାସମାନ ହେଉଥିଲା । କିନ୍ତୁ ତାହାଁ ସେ ସେତୁ ବନ୍ଧ କେବଳ ତାହାର ଭଗ୍ନାବଶେଷ ମାତ୍ର, ରାମଚନ୍ଦ୍ରଙ୍କ ସ୍ମୃତି ସ୍ତମ୍ଭ ରୂପେ ବିଦ୍ୟମାନ ।

ମହାପୁରୁଷ ଅଚ୍ୟୁତାନନ୍ଦ ଶ୍ରୀ କ୍ଷେତ୍ର ପରିତ୍ୟାଗ କରି, ଯଥା ସମୟେ ମେଳାରେ ପଦାର୍ପଣ କଲେ । ତତସ୍ଥ ପ୍ରକୃତି ରାଣୀର ମନ ମୁଗ୍ଧକର ସୁଷମା ସନ୍ଦର୍ଶନ କରି, ଅତ୍ୟନ୍ତ ପ୍ରୀତ ହେଲେ । ମେଳା ଶେଷ ପର୍ଯ୍ୟନ୍ତ ସେଠାରେ ଗୋଟିଏ ବୃକ୍ଷ ଛାୟାର ଆଶ୍ରୟ ନେଇ, ନାସ୍ତିକମାନଙ୍କ ହୃଦୟରେ ଆସ୍ତିକ ଭାବ ଜାଗ୍ରତ କରାଇବାକୁ ମନସ୍ଥ କଲେ ।

ମହାପୁରୁଷ ସେହି ସ୍ଥାନରେ ସମ୍ପୂର୍ଣ୍ଣ ଅପରିଚିତ ଥିଲେ ସୁଦ୍ଧା, ସେ ଯେଉଁ କାର୍ଯ୍ୟ ସାଧନ ଉଦ୍ଦେଶ୍ୟରେ ତୀର୍ଥ ପର୍ଯ୍ୟଟନେ ବହିର୍ଗତ ହୋଇଛନ୍ତି, ସେ ତାହା ଅବଶ୍ୟ ସମ୍ପୂର୍ଣ୍ଣ କରିବେ । ମହାପୁରୁଷ ତାହାଙ୍କର ଅଲୌକିକ ଶକ୍ତି ବଳେ ଶ୍ରୋତାକର୍ଣ୍ଣଙ୍କ ଭାଷଣ ଦ୍ୱାରା ଅମିୟ ଧାର ବର୍ଷଣ କରି ଶତ ଶତ ନରନାରୀଙ୍କ ଅଜ୍ଞାନ-ଉତପ୍ତ-ହୃଦୟକୁ ଶୀତଳ କରାଇ ପାରିଥିଲେ ।

( କ୍ରମଶଃ )



କଟକ ମନମୋହନ ପ୍ରେସରେ ଶ୍ରୀମୋହନ ଚରଣ ଦାସଙ୍କ ଦ୍ୱାରା ମୁଦ୍ରିତ । ୧୯୫୦ ।